ଆପଣମାନଙ୍କୁ ମୁଁ ମନେ ପକାଉଛି :

ଦେବ୍ରାଜ ଲେଙ୍କା
ସୂର୍ଯ୍ୟ ମିଶ୍ର
ଏବଂ
ଫଣୀନ୍ଦ୍ର ଭୂଷଣ ନନ୍ଦ

# ମିଳନ

(ଏକ ପରୀକ୍ଷାମୂଳକ ଉପନ୍ୟାସ)

ଲେଖକ ନକୁଳ ଚଂଦ୍ର ସାହୁ
'ଶବ୍ଦଘର', ଗୋଡ଼ିସାହି
କଟକ-୭୫୪୦୦୬



ପ୍ରକାଶକ *କାବ୍ୟଲୋକ*
ନିଛିଗଡ଼ କୁରୁଖି, ହରିରାଜପୁର
ଛଟଣୀ, ପୁରୀ-୭୫୨୦୫୦

ପ୍ରଚ୍ଛଦ ଚିତ୍ର ଇଙ୍କ୍ ଓଡ଼ିଶା, ଭୁବନେଶ୍ୱର-୧୩
ଅକ୍ଷର ସଜ୍ଜା ଅଙ୍କିତ ଗ୍ରାଫିକ୍ସ, ଭୁବନେଶ୍ୱର-୩
ମୁଦ୍ରଣ ବିଶ୍ୱମୁକ୍ତି ପ୍ରେସ୍, ଭୁବନେଶ୍ୱର-୭

ପ୍ରଥମ ପ୍ରକାଶ : ବୁଦ୍ଧ ପୂର୍ଣ୍ଣିମା-୨୦୦୫
ମୂଲ୍ୟ ୫୦ ଟଙ୍କା

# MILANA

*(An Experimental Oriya Novel)*

By :
**Nakul Chandra Sahoo**

Published By :
**KAVYALOKA**

First Edition :
**Buddha Purnima-2005**
Price :
**Rs. 50/-**

'... art is technique .
When we speak of technique, then,
we speak of nearly everything.'

– Mark Schorer

*'Comerado, this is no book,*
*Who touches this touches a man;'*

– Walt Whitman

*'Thought is gazing on the face of life*
*and reading what can be read,*
*Thought is pondering over experience,*
*and coming to conclusion.'*

– D.H. Lawrence

# ସ୍ୱପ୍ନର ଠିକଣା

ତା' ଗାଁ'ର ଉପତ୍ୟକାକୁ ଜୟନ୍ତୀ ଡାକିଚି !

ସେଠି ଚିର ବସନ୍ତ ତା' ପାଦର ପଂଝା ତଳେ ପୃଥିବୀକୁ ଚାପି ଡେଣାଝାଡ଼ି ବସିଛି ! ପବନରେ ଚ୍ୟୁତ, ଚଂପକ, ଅରବିଂଦ, ନବମଲ୍ଲୀ ଓ ଅଶୋକଙ୍କ ଉତଳା ଉଛୁଳା ହସର ମହକ ଆଙ୍କିଯାଉଛି ବୃତ୍ତ ! ଜୟନ୍ତୀର ଓଠପରି ଧାଡ଼ି ଧାଡ଼ି କିଶଳୟ, ପବନ ଉତ୍ତରୀୟର ଧଡ଼ି । ଜୟନ୍ତୀର କଂଠପରି ଏଠି ଡାକେ କୋଇଲି ! ମଝିରେ ଯାଉଛି ବୋହି ଖରସ୍ରୋତା ନଈ; କାହାର ଏ ଉପବୀତ କେଜାଣି ! ମୁଗ୍ଧ କରେ ଜୟନ୍ତୀର ହସପରି ନଦୀର କୁଳୁ କୁଳୁ ଧ୍ୱନି ।

ଜୟନ୍ତୀର କଳାଡୋଳା ଦି'ଖଣ୍ଡ ଗୋଲ୍‌ଗୋଲ୍ ନୀଳପ୍ରବାଳ ! ମତ୍ସ୍ୟାକୃତି ଭେଲ୍‌ଭେଟ୍ ଫରୁଆରେ ବସନ୍ତ ତାକୁ ସାଇତିଛି ! ନାସା ଉର୍ଦ୍ଧ୍ୱକୁ· ଦୁଇ ଭ୍ରୂ ମଝିରେ ତା' ପୀତବର୍ଣ୍ଣର ବିଂଦି ! ତା'ଦେହ ସୋରିଷ କ୍ଷେତ ! ମୁଣ୍ଡ ଉପରକୁ ପିଠି ତଳକୁ ଅଧାଫିଟା ଅଧଗୁନ୍ଥା ବେଣୀର କବିତା ! ସିଏ ପିଂଧେ ଜରିର ଧଡ଼ିଦିଆ ନାରଙ୍ଗୀ ଶାଢ଼ୀର ମଣିକର୍ଣ୍ଣିକା ! ତା' ବ୍ଲାଉଜର ରଙ୍ଗ ? ନାଲି ଓ ହଳଦୀ; ଦେଖାଯାଏ ପେଟପାଖ, ଅଣ୍ଟାତଳ ଯେମିତି ଅସ୍ତ ଯାଏ ଜହ୍ନ !

ଜୟନ୍ତୀ; ବୟସ ତା' ଚବିଶି ଟପି ଯାଇଛି ! ଭଅଁର ଲେଖା ତା' କଳା କଳା ଡୋଳା ଦୁଇଟା ସାମ୍ନାକୁ ମୁହଁକରି ଭାବନାର ରଚନା ଲେଖୁଛି ! 'ଏଠି କେହି ଈଶ୍ୱର ନାହାନ୍ତି ! ଜୀଅନ୍ତା ଖାନ୍‌ସାମା ହିଁ ସବୁକିଛି ! ଆୟୁଷ ହୋଇ ଆସୁଛି ସଫେଦ୍ ! ନଦୀଶଯ୍ୟା ଦିଶୁଚି ବିଧବା ! ଡଙ୍ଗା ଚଢ଼ି ଆସୁଚି ସାପଟା ଅଧିକୃତ ଓଷ୍ଠ ତଳକୁ । ନଈ ଦଂଶିବ ଏଥର ସୁନାଦାନ୍ତ

ଲଗା ସୌଦାଗରକୁ ??'

କୁଆଡ଼େ ଯାଏ-ଅପର୍ଯ୍ୟାପ୍ତ ଉଦ୍‌ବେଗ ! ଆକାଂକ୍ଷାର ଦୃପ୍ତ ଚାଲି ଲାଗେ ଅସହ୍ୟ । ଆରକ୍ତ ହୋଇଯାଏ ଆଙ୍ଗୁଠି ଓ ଆଲିଙ୍ଗନ ! ପଦ୍ମ କ'ଣ ବୁଝିବ ଅଣନିଶ୍ୱାସୀ କ୍ଷେତ କେମିତି ଜାବୁଡ଼ି ଧରିଛି ଆରୋହୀକୁ; ଅତିଥିକୁ ?

ଅସହ୍ୟ ଅବଶୋଷରେ ଜୟନ୍ତୀ ଦେଖୁଚି ଖାଲି ଦରକାରୀ ଦୋଳ ବିମାନକୁ ? ଦର୍ପଣକୁ ଓ ମୃଦଙ୍ଗକୁ ? ବଳାଗଣ୍ଡି ଉପରେ ଥିବା ଉତାଳ ଆକୁଳତା ଓ ଅପେକ୍ଷାକୁ ?

ଫଗୁଣ ଆସିଛି; ଜାଣେ କିଛି ପ୍ରଜାପତି ? କେମିତି ଜାଣିବ ମନର ପ୍ରଜାପତି ଗୁଣନ ଖନ୍ଦାର ଅଜବ ସୂତ୍ର ? ପୀତପାଟ ପରିହିତ ସଂସାର ଚାହାଣୀର ଧଳାନାଲି ରଂଗର ଅର୍ଥ ! ଜୟନ୍ତୀ ନିର୍ବାକ ! ତା'ର କ'ଣ-କାହାକୁ କିଛି କହିବାକୁ ନଥିଲା ?

ବୋର୍ ହେବା ହେଲା ଗୋଟିଏ ମରୁଭୂମିର ଠିକଣା ! ଗୋଟାଏ ଓଏସିସ୍ଥ ଖଜୁରୀ ବାହୁଙ୍ଗା ତଳେ ଝୁଲିପଡ଼ିଥିବା ଜହ୍ନ - ଜୟନ୍ତୀ ! ତା' ମନ ପେଛାଏ ପାଚିଲା କୋଳି ! ଗଛତଳେ ଚବ୍‌ଚବ୍ ସ୍ୱଚ୍ଛ ପାଣି; ଗୋଟାଏ ପତଳୀ ମରୁନଦୀ - ତା' ଭଲପାଇବା ?

ଜୟନ୍ତୀ ଲେଖିଛି ଚିଠି : ସାଧାରଣକୁ ଅସାଧାରଣ କରି ଭାବିବା ତା' ଅଭ୍ୟାସ ହୋଇ ଯାଇଛି ! ମୁଁ ତାକୁ ଜଣେଇ ଦେଲି - " ତୁମ ଅସାଧାରଣ ଭାବନାରୁ ମତେ ଦେଇଦିଅ କିଛି; ତାକୁ ନେଇ ମୁଁ ଖଣ୍ଡିଏ ଉପନ୍ୟାସ ରଚିଦିଅନ୍ତି !"

ଜୟନ୍ତୀକୁ ମୁଁ ପ୍ରଥମେ ଭେଟିଥିଲି କେଉଁଠି ?

କେଉଁଠି -ତା'ସହିତ ହୋଇଥିଲା ମୋର ପ୍ରଥମ ଦେଖା ? ସେ ଦିନଟି ବୋଧହୁଏ ଥିଲା ପ୍ରତିପଦା !

ଜୟନ୍ତୀ ଏକ ଭୁଲ୍ ଠିକଣାର ଚିଠି; ସମୟର ଡାକବାଲା ମନର ଝରକା ଦେଇ ସଂପର୍କର ଲଫାଫାଟା ଗଳେଇ ଦେଇ ଯାଇଛି ? ମନୀଷାରୁ ବଳି ମିଠା ତା' ସଂପର୍କର ମଧୁ ! ବଡ଼ ଉଛୁଳା ତା' ଶବ୍ଦର ଜ୍ୟୋସ୍ନା ! ପ୍ରତି ବାକ୍ୟରେ ନିଲଠା ମଳୟର ବାସ୍ନା ! ତୁହାକୁ ତୁହା ବର୍ଷିଯାଏ ଉତ୍କଣ୍ଠା ! ଆବେଗର ନଈ କି ଜୁଆରିଆ ! ଥଳ କୂଳ ପାଏନାହିଁ ଦୋଦୁଲ୍ୟ ମାନ ସ୍ଥିତିରେ ବୋଇତ ! ଅସ୍ଥିତ୍ୱର ଏ ଅସୁସ୍ଥତା ପାଇଁ ଦାୟୀ କିଏ; ଜୟନ୍ତୀ ତ ନୁହେଁ ! ପ୍ରେମର ସ୍ରୋତରେ ଭାସୁଥିବା ବ୍ୟକ୍ତିତ୍ୱଟି ସତେ କେତେ ହାଲୁକା !

ଜୟନ୍ତୀ ପ୍ରତିବାଦ କରିଛି - ''ମାନସ ଭାଇ, ମୁଁ ନୁହେଁ ତୁମ ନାୟିକା ! ତୁମେ ମୋତେ 'ପ୍ରିୟତମା' ବୋଲି ସମ୍ବୋଧନର ତୋନା ଫୁଲଟିଏ ଦିଅନା ! କେତୋଟି ଘଣ୍ଟା ପରେ ବୃନ୍ତଚ୍ୟୁତ କୁସୁମଟି ଝାଉଁଳି ଯାଏ; ତୁମେ କ'ଣ ଜାଣନା ?''

ପୁଷ୍ପଟିଏ ମଉଳିବାକୁ ବହୁତ ବହୁତ ସମୟ ଲାଗେ ! କିନ୍ତୁ ସ୍ୱପ୍ନଟିଏ ବିସ୍ଫୋରିବାକୁ ? ଦାମୀ ନିଦ୍ରା ଚେନାଏ ତୁଟିଯିବାକୁ ସମୟ ଖୁବ୍ କମ୍ ଲାଗେ ! ଏତେ ସ୍ୱଳ୍ପ ସମୟ ପାଇଁ ସୁଖ ନିଦ୍ରା ଯାଉଥିବା; ମଧୁର ସ୍ୱପ୍ନ ଦେଖୁଥିବା ମଣିଷ ମାନେ ସ୍ୱଳ୍ପ କାଳ ସ୍ଥାୟିତ୍ୱ ଲାଗି ଆଉ ନିଦ୍ରା ଯା'ନ୍ତେ ନାହିଁ; ସ୍ୱପ୍ନ ଦେଖନ୍ତେ ନାହିଁ, ଜୟନ୍ତୀ ! ମଣିଷ ଜଡ଼ ହୋଇ ଯା'ନ୍ତେ ! ସଂସାରରେ ଆଉ ପଡ଼ନ୍ତାନି ଜହ୍ନ ! ଅମାବାସ୍ୟାକୁ ଆଦରି ନେଇ ବନସ୍ପତି ନିଜ ବର୍ଦ୍ଧନର ନିୟନ୍ତ୍ରିତ ମାର୍ଗକୁ ନିଅନ୍ତେ ଆଦରି ! ସିସିଫସ୍ ପାହାଡ଼ ଉପରକୁ ଆଉ ଉଠାନ୍ତାନି ପଥର !

ସଂସାରର ଅନ୍ୟନାମ ଭଙ୍ଗୁର ।

ପୁଷ୍ପ ଝାଉଁଳିଲେ ହିଁ ଉପଲବ୍ଧି କରିହୁଏ ତା' ସୌନ୍ଦର୍ଯ୍ୟର ଉତ୍କର୍ଷ ! ଜୟନ୍ତୀ; ଗଙ୍ଗାଜଳ ଖାଲି କ'ଣ ପୂଜାରେ ସୀମିତ ? ଛୁଟି ଦିନ ବ୍ୟତୀତ ରବିବାରର ନାହିଁ ଅନ୍ୟ କିଛି ଅର୍ଥ ?..... ତୁମ ସହିତ ମୋ ପରିଚୟର ଉନ୍ମେଷ; ମତେ କରି ସାରିଛି ନିଜ ବଖରାରୁ ନିର୍ବାସିତ ! ଅଥୟ ଓ ଅର୍ଥାନ୍ତର ! ଅଥଚ ଅର୍ଥହୀନ ଶ୍ଳେଷ ଏକ ତୁମ ଏଇ ଶୀତଳ ସଂପର୍କ ?

ତା' ଗାଁର ଉପତ୍ୟକାକୁ ଜୟନ୍ତୀ ଡାକିଚି ।

ଅଭୁକ୍ତ ନିଘଞ୍ଚ ଲୋଭରେ ଜୁଡୁ ବୁଡୁ ବସନ୍ତ ଗୋଟିଏ ଝିଅର ଠିକଣା; ଖୋଜୁଛି ବର୍ଷା ? କି ପାଚିଲା ଦିଶେ ମଳୟର ଗାଲ ଦୁଇଟା ! କୋଇଲି କଣ୍ଠରେ ସୁଗଂଧ ଜକଜକ; ପଦ୍ମ ବନ ସାରା ନିଆଁ ଓ ନିଦର ମହକ ! ଫଗୁଣର ଲଙ୍ଗଳା ପଣ ତୁମେ ଦେଖୁଚ ? ଦେଖୁଚ ?

ତୁମ ସ୍ତନ ପୁନେଇଁ ଜହ୍ନ ! ଲାଲ୍ ପଳାଶରେ ଜଳେ ଅତୃପ୍ତ ଦୂର ପାହାଡ଼ ! ଥରକୁ ଥର ଥୁକୁଲ ପକାଏ ତୁମ ଘର ମୁହାଁ ଭ୍ରମର ! ପ୍ରଣୟର ଗୁରୁଗୁରୁ ଡାକରେ ନିଛାଟିଆ ଲାଗେ ପାପୁଲି ! ଅପ୍‌ସରାର ଛାତି ପରି କାରୁକାର୍ଯ୍ୟରେ ଭର୍ତ୍ତି ଜହ୍ନରାତି ତୁମ ମୁହଁ ପରି ଦିଶୁଚି ! ଅବିର ବୋଳା ତୁମ ମନ; ସତରେ କ'ଣ ମୋ ମନର ଠିକଣା ଜାଣିଚି ?

ଜ୍ୟୋସ୍ନାର ଦର୍ପଣରେ ପାରିଧିର ବ୍ୟାକୁଳତା ! ଚଢ଼େଇର ଆଖିପରି ଛେଉଣ୍ଡ ଏସ୍ରାଜର କବିତା; ମୋ ମନ ଓ ମାନଚିତ୍ର ସାରା ବ୍ୟାପୁଚି ! ତୁମ ସ୍ମୃତି ନିରୁଦ୍‌ବିଗ୍ନ ଓ ମତେ କରିଦିଏ ଅତି ଅନ୍ୟମନସ୍କ ! ଜୟନ୍ତୀ, ମୁଁ ତୁମ ଅନ୍ତର୍ଭେଦୀ ସ୍ୱଚ୍ଛ ସଂପର୍କର ବର୍ଣ୍ଣରେ ନିମଗ୍ନ ! ତୁମ ଗାଁ ନଈ ପରି ଦୁଇ କୂଳ ଛୁଇଁ ବୋହିଯାଏ ଉତ୍ତେଜନା ସ୍ନାୟବିକ ! ପ୍ରିୟତମା, ତୁମ କିଶୋରୀ ଦେହକୁ ରମଣୀ କରିଦେବ ମୋ ପରିଛନ୍ନ ସ୍ପର୍ଶର ଗୋଲାପ ! ତୁମେ ବ୍ରିଡ଼ାସକୁଣ୍ଠା, ଭୀରୁ ଯୁଥିକା !..... ଝାଳେଇଯାଏ ମୋର ହାତ !

ଜୟନ୍ତୀ ଓଠର ଲାଲ୍ ଫୁଲ ଧୀରେ ଧୀରେ ହଲିଚି ! ରଂଗଣୀ ଫୁଲ ମନାକରିଚି ଭ୍ରମରକୁ; ନାଇଁ, ନାଇଁ ? ମୋ ଅନ୍ତର୍ଦୃଷ୍ଟିର ଟେକ୍ନିକ୍‌ରେ ଲମ୍ବ ଓ ଆୟତ ଅପଛାୟାର ଚିତ୍ର ! ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜର କାର୍ଡ଼ପରି ରିନିୟୁ ହୋଇଛି ଭୂଗୋଳ ! ପାଚିଲା ଜ୍ଞାନ ବୃକ୍ଷ ! ମୌଳିକ ପାପପୁଷ୍ପ ଓ ଫଳଟା ଆପେଲ୍; ଲାଲ୍‌ଲାଲ୍ ସମୟର ବହିଷ୍କରଣ ! ଜୟନ୍ତୀ ସବୁ ଦୃଷ୍ଟିରୁ ମୋ'ଠୁ କନିଷ୍ଠ । ବୟସରେ ବହୁତ ସାନ !

ପରାଗ ରେଣୁ ଲେଖି ଦେଇଛି ମୋ ମୁହଁରେ ଯୌବନର ଅଠାଳିଆ ଠିକଣା ! ବର୍ଷାର ଆଙ୍ଗୁଠିରେ ଇନ୍ଦ୍ରଧନୁ ଖୋଲି ଦେଇଚି ମୋ ଦେହରୁ ପୋଷାକର ବୋତାମ ! ମୋ ମୁହଁରେ ଚେନାଏ ବାର୍ତ୍ତା ଉକୁଟିଛି; ତା ନାଁ ମିଳନ !

ତୁମ ମନରେ କ'ଣ ଅଛି କେଜାଣି; ମୁଁ ଲେଖି ଦେଇଚି !

ଉନ୍ମୁକ୍ତ ପଦ୍ମକୋଷର ଓଠ କ'ଣ ଖୋଜେ ଭ୍ରମରର ବୟସ ? ଭ୍ରମର ସବୁବେଳେ ଯୁବକ ! ସମୟକୁ କ'ଣ ଚିହ୍ନାଇ ଦେବ ଉପବୀତ; କାହାର ନାମ ବସନ୍ତ ? ମଧୁ ଅଠାରେ ଭର୍ତ୍ତି ପରାଗକୋଷ ପବନର ପାଦକୁ ବାନ୍ଧି ଦେଇଛି ! ପାଖୁଡ଼ା ତୁମେ ବୁଜି ଦିଅ ପ୍ରିୟତମା, ରୁନ୍ଧିଦିଅ ଚତୁଷଷ୍ଠୀ ଗ୍ରନ୍ଥୀ ! ମୁଁ ବୁଜି ଦେବି ମୋ ଆଖିର ଝରକା ?

ଦେଲି ।

ମଳୟ ଖୋଜୁ ତା' ନୂତନ ଠିକଣା !

ଜନ୍ମର ଏ ତୀର୍ଥଯାତ୍ରା ! ଉଦ୍‌ଗ୍ରୀବ ସ୍ଥିତିର କୌରବ ! ଭାବ ସଂବେଗ ଓ ସ୍ୱପ୍ନ

ସଂଭାବନାର ବଂଦ ଦ୍ୱାର ଟପି ଯିବ ? ଯାଉ ! ନିଷିଦ୍ଧ ସୁଖର କି ସବୁଜ ବିଶ୍ୱାସଟିଏ ! ପାଖୁଡ଼ାଏ ଧନିଆ ପତ୍ରପରି;... ମତେ ଡ଼ାକି ଆଣିଚି ! ଏବେ ସିଂଦୂରା ଫାଟି ଆସୁଛି ! ତରଳି ଯାଉଛି ଅନ୍ଧାର ! ନୀରବତା ମତେ ଅଚିହ୍ନା ଲାଗୁଛି ! ଜହ୍ନଟା ତୁମ ଚିଠିପରି ଦିଶୁଚି ! ତୁମ ପିଠିପରି ଦିଶୁଚି ! ଓହ୍ଲାଇ ଯାଉଛି ପ୍ରତୀକ୍ଷା ! ଓହ୍ଲେଇ ଯାଉଛି ସତ୍ତା ! ଓହ୍ଲାଇ ଯାଉଛି ବର୍ଷା ! ଯାବତୀୟ ବିଶ୍ୱାସ ଓହ୍ଲେଇ ଯାଉଛି, ଜୟନ୍ତୀ !

ମପାଚୁପା ତୁମ ଭୁଲତାର ନାଟକୀୟ ନୀଳିମା ଚିହ୍ନାଜଣା କାହାଣୀଟିଏ ହୋଇ ମତେ ଡ଼ାକିଛି ? ତୁମ ଭଲ ପାଇବାର ଅଯୁକ୍ଷ୍ମାନ ଗୁଳ୍ମଲତା ସାରା ଉପତ୍ୟକାକୁ ଦଖଲ କରି ନେଇଛି ! ଦଖଲ କରି ନେଇଚି ତୁମ ସ୍ମୃତି ଓ ଚିଠିର ଅନୁପମ ପଂକ୍ତି ! ମୋ ସ୍ଥିତିର ସଂକ୍ଷିପ୍ତ ଜମିଦାରୀଟିକୁ ତୁମ ଭଲ ପାଇବା ନାଁ ରେ ମୁଁ କବଲା କରିଦେଇ ଏବେ ସନ୍ୟାସୀ ! ତୁମ ଗାଁ ତ୍ରିନଦୀ ସଙ୍ଗମ; ମହାତୀର୍ଥକୁ ଚାଲିଛି !

ତୁମ ଗାଁକୁ ଯିବା ମୋ ଯାତ୍ରାର ଏଇ ସଦ୍ୟଫୁଟା ମାନସିକତା ଚିତ୍ରକଳ୍ପପରି ଲାଗେ ଉଷୁମ ! ମନୋବୃତ୍ତିକୁ ଧରି ରଖୁଚି କ୍ରିୟା ସମୂହ ! ଆୟତ ଗ୍ରାଫ୍ ଓ ଜ୍ୟାମିତି ! ସତେ କ'ଣ ଏତେ ମୌଳିକ ତୁମ ସଂପର୍କର ରାତ୍ରି ? ସହସ୍ୟମୟ ଓ କି ଡ଼ୋରିଆ ଡ଼ୋରିଆ ଆଖି ! ମାନବିକତାର ମନୀଷାରେ ରୋମାଣ୍ଟିକ୍ ?

ଅସ୍ଥିର ଓ ଅଶ୍ରାବ୍ୟ ବିବେକ ! ମୃତ ଚିତ୍ତବୃତ୍ତି ଅଚରୈବେତି ? ନା ! ଯେତେ କୃଷ୍ଣ ହେଲେ ବି ପଥ ଯେମିତି ପହଂଚେ ଆଲୋକର ବୋଇତ ! ମୁଁ ପହଂଚିବି ତୁମ ଗାଁରେ !

ଛଳଛଳ ସ୍ୱଚ୍ଛ ଓ ଅକପଟ ତୁମ ଗାଁ ନଈ ଯମୁନା ହୋଇ ଛାଡ଼ି ଦେବ ମତେ ବାଟ ! ଆମ୍ବତୋଟା, ଗାଁ ମୁଣ୍ଡ ଦିଅଁ ଓ ବାଙ୍କ ବରଗଛ ମୁଁ ଟପି ଯିବି ! ଟପି ଯିବି ତୁମ ଗାଁ' ଡ଼ାକଘର ! ବାଁ'କୁ ସାଇର ମୋଡ଼, ଘର ପରେ ଘର ! ପିଣ୍ଡା; ପିଣ୍ଡା ଉପରେ କାଠ ଓ ପଥରର ଖୁଣ୍ଟ; ଉପରେ ଚାଳ ଛପର ଚିତାପକା କେତେ ମାଟି କାନ୍ଥ ! ଟପି ଟପି ଗଲାପରେ ଭାବାୟିତ ତର୍କମାପରି ପହଞ୍ଚିବ କେତେ ଲମ୍ବା ଉପଭୋଗ୍ୟ ସତ୍ତା; ତୁମ ଘରର ଫାଲ୍‌ଗୁନ ! ପରିଦୃଷ୍ଟ ଇମେଜ୍‌ରେ ଘଞ୍ଚ, ପ୍ରଶ୍ନ ଖାଲି ପ୍ରଶ୍ନ ! ନୃତାତ୍ତ୍ୱିକ, ଲୌକିକ ଓ ଦୁର୍ବୋଧ୍ୟ !

ଏଇଘରେ ଜୟନ୍ତୀର ଜନ୍ମ ? ସ୍ୱପ୍ନ ଓ ସଂଚୟ ଭର୍ତ୍ତି ତା' ସମୀପତା ପୂର୍ଣ୍ଣ ମୂର୍ତ୍ତି ଧୂମ୍ରାଳ ପ୍ରକୃତି ଗଢ଼ିଚି ? ଏଇଠି କୁଆଁ କୁଆଁ, ଠୁକ୍‌ଠୁକ୍ ଚାଲି; ହସର ମଧୁର ମିଠେଇ ଚଖା;

ଚଡ଼ି ଓ ପ୍ୟାଣ୍ଟ ପିନ୍ଧା; ଫ୍ରକ୍‌ରୁ ବ୍ଲାଉଜ୍ ଓ ଶାଢୀ ! ବୋଉଠୁ ରୋଷେଇର ପ୍ରତିଶ୍ରୁତି ଶିକ୍ଷା, ଭାଉଜଙ୍କଠୁ ମାଣବସା ଚିତା; ସ୍କୁଲ ଟପି କଲେଜରୁ ଶିଖିଚି ସେ ପଙ୍କରୁ ପଙ୍କଜର ଭାଷା !

ଏବେ ଫୁଟିବାରେ ଅଭ୍ୟସ୍ତ ପୁଷ୍ପର ମୁକ୍ତକ ! ଗଭୀରତାରେ ଗମ୍ଭୀର ଓ ଲୀଳାମୟ ଗର୍ଭଗୃହ ! ଯୁକ୍ତି ଯୁକ୍ତ ପ୍ରସ୍ତାବନା ଅସମାପିକା ସ୍ୱପ୍ନରେ ଅଥୟ ! ନୀଳ କଇଁ ଅନ୍ତର୍ଚ୍ଛଂଦରେ ସଂଚରଣଶୀଳା ଖୋଜେ ମଂଜୁଳ ଏକ ଛବିଳ ଉବାଚ ! ପାଏ ମଧ୍ୟ !

ଜୀବନର ସାନ୍ତ୍ୱନା ତାକୁ ସଜୀବ ଲାଗେନା ! ପ୍ରତିଶ୍ରୁତିର ଫୁଟା ଫୁଲକୁ ସିଏ ଟଟକା ହେଜେନା ! ସକାଳର ବାସ୍ନା ନାଇଁ ? ଲୀଳାମୟ ଲାଳସା ଶୁଖାଇ ଦେଉଛି ତଣ୍ଟି ? ସକାଳ ସବୁ ନିର୍ଜ୍ଜନତାରେ ଏତେ ଫିନ୍‌ଫିନ୍ ! ମୋହିନୀ ଶଂଖମଲ ପ୍ରାତ୍ୟହିକ ଏତେ ଶୂନ୍ୟକୋଳ ! ଦୁର୍ବହ ଓ ଭର୍ତ୍ତି ଉଦ୍‌ବେଳନ ! ଯାରି ନାଁ ଜୀବନ ? ଘୋର ତିକ୍ତତାରେ ଅଣାୟତ ! ଆତ୍ମହତ୍ୟାପରି ଲାଗେ ମତେ ନିଜ ବଂଚିବାଟା !

ସିଏ କିଛି ବୁଝେ ନାଇଁ ଅଙ୍କ କି ଭୂଗୋଳ ! ସମୟ ଉଜୁଡ଼େନି ! ମେଘ ଆସେ ଉଡ଼େଇ ତା' ଉତ୍ତରୀୟ ! ଗିରି ଚୂଳ ଆବୃତ୍ତ କରି ନଈ ଟପି ମେଘ ଆସେ ତା' ଗାଁକୁ ହଲି ଦୋହଲି ଯେମିତି କୃଷ୍ଣ ମୁହାଁ ଶ୍ରୀଜଗନ୍ନାଥଙ୍କ ପହଣ୍ଡି !

ବର୍ଷାରେ ଭିଜି ଯାଏ ତା'ର ଓଠ ! ସବୁଜ ଲତାର କ୍ଷତ ଧୋଇଦିଏ ବର୍ଷାର ଠୋପା ! କୁଆଁରୀ ମନର ମାଟିରେ ଲେଖେ ସାଧବ ବୋହୂ ଜହ୍ନର କବିତା ! ବର୍ଷା ଭିଜାଏ ରୁମାଲ ! ପବନ ଫିଟାଇ ଦିଏ ଝରକାର ଓଠ ! ତା' ପାଉଡ଼ରବୋଳା ମନ ଅସ୍ତବ୍ୟସ୍ତ କରି ପକାଏ ଶ୍ୟାମଳୀ ମେଘର ପ୍ରସ୍ତାବିତ ଠିକଣା !

ଦର୍ପଣକୁ ଅନାଏ ଜୟନ୍ତୀ ! ତା' ଯୁଗଳ ସ୍ତନର ମୂନପରି ଝରକା ଟପି ଅଗଣାରେ ଜମିଚି ଶାଣିତ ଖରାର ଚିକ୍‌ମିକ୍; ମୁକୁଳା ବାଳକୁ ଖୋଲି ଉଡ଼ାଏ କେରି କେରି ! ବଡ଼ ଅଣନିଃଶ୍ୱାସୀ ଲାଗେ ! ଚିଠି ଲେଖେ ! ଇଏ ବେଳ କି ଅବେଳ ? ଅସହ୍ୟ ବିରକ୍ତି ମୋଜାପରି ଲାଗେ ଭାରି ଟାଇଟ୍ !

ବ୍ୟକ୍ତିଗତ ଦୁଃଖ, କ୍ଷୋଭ ଓ ରୋଗ ଷୋଳ ଖଂଜା ବୃତ୍ତ ଭାଙ୍ଗି ଗଢ଼ି ଦିଏ ନିଜ ଭିତରେ ସାରା ବିରକ୍ତିର ତ୍ରିଭୁଜ ! 'ମାନସ ଭାଇ, ତୁମେ ମତେ କ୍ଷମା ଦେବ ! ମୁଗୁନି ପଥରରେ ଅଙ୍କା ନାରୀ ମନର କବିତା ବ୍ୟାପି ଯାଏ ଯେମିତି ବିଷ ଜ୍ୱାଳା ମୋ ସାରା ସତ୍ତା !

ଟପି ଯାଏ ରାସ୍ତା, ନଈ ଓ ପୃଥିବୀ; କେମିତି ତମକୁ ମୁଁ ବୁଝେଇବି, ମାନସ ଭାଇ ! ମୋ କେଶ୍‌ରେ ସଜା ପାଚିଲା କମଳାପରି ଲାଲ ଓ ହଳଦୀ ଗୁରୁଗୁରୁ ଏ ନାରୀଟିର ଅନ୍ତନଳୀରେ ଗ୍ୟାଷ୍ଟିକ୍ ଭୁରୁଭୁରୁ ! ସମୟର କୁହିତ ଟିପ ଚିହ୍ନକୁ ଲିଭେଇ ଦେଇ କାହା ସହସ୍ରାରେ ବିକଶିବ ଭଲ ପାଇବାର ଇଡ଼ା ଓ ପିଙ୍ଗଳାର ଜହ୍ନ ? କାହା ସୁଷୁମ୍ନା ପକ୍ଷୀ ଡ଼ାକିବ ମୋ ଚେତନାର ସୁବର୍ଣ୍ଣ ପକ୍ଷୀକୁ ?'

ଜୟନ୍ତୀ ଏବେ ବି ଏକ ସଫେଦ୍ ଲଫାପା । ତା ସଂସର୍ଗର ରୁମାଲରେ ଏବେ ବି କେହି ମୁହଁ ପୋଛି ଲଗାଇନି ଝାଳ ! ସତୀ ସଂବିତ୍‌ର ପୋଷ୍ଟକାର୍ଡ଼ଟି ଅଲେଖା ରହିଛି ! ତା'ର ତ କେହି ମନର ମଣିଷ ନାହାନ୍ତି; କା' ପାଖକୁ ଦେବ ସେ ଚିଠି ? ପାନିଆର ଦାନ୍ତପରି ବଡ଼ ମ୍ରିୟମାଣ ତା ଅନ୍ଧୁଣୀ ଅଶ୍ୱତ୍ଥ ପତ୍ର; ତା ଉପରେ ଶୁଆଇବ ସିଏ କେଉଁ ପୁରୁଷର ବାଳୁତ ଶ୍ରୀକୃଷ୍ଣ ?

କାମନା ନଈରେ ଭାସେ ନୀଳନୀଳ ଅନିର୍ବାଣ; କଳସ କଳସ ଅସୁଖ ଅତୃପ୍ତ ଅମୃତର ଜହ୍ନ ! କାହା ସ୍ପର୍ଶର ଠୋପା; ଜ୍ୟୋସ୍ନାର ମନ୍ତ୍ର ପାଠର ପ୍ରତୀକ୍ଷା ରଚେ ପ୍ରଜ୍ୱଳିତ ଜରାୟୁର ଦୀପ ତା' ! ତପ୍ତ ପୃଥିବୀ ବର୍ଷାର ଶୀତଳ ଠୋପା କାମନାରେ ଡ଼ହଳ ବିକଳ ହୋଇ ଭାଜି ହୋଇ ଯାଏ । ନାରୀତ୍ୱର ସବୁଜ ପତ୍ର ରଡ଼ରଡ଼ ଖରାର ସ୍ପର୍ଶରେ ଶୁଖି ହୋଇ ଆସେ କଳା ମଡ଼ମଡ଼ !

ନଈ ବଢ଼ିଚି ! ଫେଣଭର୍ତ୍ତି ଗୋଳିଆ ଜଳରେ ଅଣନିଶ୍ୱାସୀ ନାଗୁଣୀ ଖଣ୍ଡେ ଭଙ୍ଗା ଡ଼ାଳରେ ଗୁରେଇ ହୋଇ ଯାଇଛି ! ଡ଼ାଳ ଭାସି ଯାଉଛି, ଭାସି ଯାଉଛି ନାଗୁଣୀ ତା' ଅସ୍ୱୀକୃତ ଓ ସଂପୂର୍ଣ୍ଣ ଅପରିଚିତ ଗୋଟିଏ ବ୍ୟବଧାନ ଆଡ଼କୁ !

ବ୍ୟବଧାନଟା କୁଆଡ଼େ ଚିରନ୍ତନ ! ପୁଣି ସମୟ ନିର୍ବିଶେଷ ନୁହେଁ ଓ ନୈର୍ମାନବୀକରଣ ! ଜୀବନ ଖଣ୍ଡେ ନଭେଲ୍ ନୁହେଁ କି ଜୟନ୍ତୀ ଜଣେ ନାୟିକା ନୁହେଁ ! ସିଏ ସମୟର ହ୍ୟୁମାନାଇଜେସନ୍ !

ଜୀବନର ଗୋଟେ ଉଦ୍ଦେଶ୍ୟ ରହିଚି ! ଜାଣିଚି କିଏ ସୃଷ୍ଟି ରାସ୍ତାର ଦୈର୍ଘ୍ୟ ! ତୋ ବୟସ ହେଲା କେତେରେ ଆତ୍ମା ? ଆଉ କେତେ ବାକି ଅଛି ଯନ୍ତ୍ରଣାର ରାସ୍ତା; ପାର ହେବାକୁ ମୋ ପୂରନ୍ତା ଯମୁନା ? ଗୋପ ଆଉ କେତେ ଦୂର ଏଠୁ ? ସମୟର ବି କ'ଣ ଗୋଟେ ପୂର୍ଣ୍ଣଛେଦ ଅଛି; ସାମଗ୍ରିକ ଆତ୍ମପ୍ରତ୍ୟୟର ଚିତ୍ରକଳ୍ପ କେବେ ପାରି ହେବ କମ୍‌ର

ପୃଥିବୀ ? ତୁମ ଜ୍ୟୋତିଷ୍ମାନ ସାନ୍ନିଧ ନିଆଁ, ଫୁଲ, କାଚ ଓ ମଂଦାରପରି ମର୍ମ ସନ୍ଧ ! ପୁଲକ ପ୍ରତିହତ ଓ ଅଗର୍ନଳ !

ଉତ୍ତୀର୍ଣ୍ଣ ଆବେଗିକ ସ୍ୱତଃସ୍ଫୁର୍ତ୍ତତା ରଚିଯାଏ ଅଶଂକୋଚ ବାଙ୍ମୟତା ! ଗର୍ଭବତୀ ସମୟର ରୂପକଳ୍ପୀ ସମୀକ୍ଷା !

ତୁମ ଚିଠି ଜହ୍ନପରି ଦିଶୁଚି ! ଅଭାବନୀୟ ଉପଭୋଗ୍ୟ ତୁମ ଗଦ୍ୟ ମୋ ପାପୁଲିରେ ଛନ୍ଦିଦିଏ ଗୋଟିଏ କ୍ରମଶଃର ପାପୁଲି ! କ୍ଲାନ୍ତି, ବିତୃଷ୍ଣା ଓ ବିବମିଷା ମୋ ଚକ୍ଷୁରେ ଧରାପଡୁନି, କିଛି ଗୋଟେ ଭୁଲର ସଦ୍ୟକଟା ! ନିରୁପଦ୍ରବ ଭବିଷ୍ୟତ ଆଡ଼କୁ ମୋ ଟ୍ରେନ ମୁହାଁଇଛି ! ପ୍ରତୀକ୍ଷାର ଦୂରତାକୁ ଅତିକ୍ରମିବାକୁ ଷ୍ଟେସନ ଛାଡ଼ିଛି ! ଧୀର ଓ ମନ୍ଥର ବେଗ ଡିଷ୍ଟାଣ୍ଟ ସିଗ୍ନାଲ ପାରି ହେବା ପରେ ଲଭିଛି ପବନର ବେଗ ! ରେଲ୍‌ଗାଡ଼ିଠୁ ବେଗବାନ ମୋ ମନ ! ତୁମ ଗାଁରେ ପହଞ୍ଚିଗଲାଣି ଜୟନ୍ତୀ !

ଆସ, ତୁମେ ଘରୁ ପଦାକୁ ବାହାରି ଆସ, ପ୍ରିୟତମା !

ତୁମ ଘରର ପାହାଚ ଟପି ମୁଁ ଏଥର ବାରଣ୍ଡା ଉପରକୁ ଉଠିଯିବି !

''ଆରେ; ତୁମେ ଧରନା ମୋ' ପାପୁଲି ! ମୋ ବାହୁରେ ଧକ୍କା ଖାଉ ତୁମ ବାହୁ ଓ ପୁରିଲା ଛାତି !'' ହସି ହସି ଘର ଭିତରକୁ ଜୟନ୍ତୀ ମୋତେ ଟାଣି ନେଉଛି ! ତୁମ କୁମାରୀ ଦେହର ସୁରଭି ଶାଢ଼ୀ ଟପି ମୋ ମୁହଁସାରା ବୋଳି ହୋଇଯାଉଛି ! ତମେ ଡାକି ଡାକି ଚାଲିଚ ତୁମ ବୋଉଙ୍କୁ ''ବୋଉ, ବୋଉ,..... ଏଇ ଦେଖ କିଏ ଆସିଛନ୍ତି ଆମ ଘରକୁ !''



# ବେନାମୀ ଫୁଲର ବାସ୍ନା

ଶ୍ମଶାନପରି ଦେଖା ଯାଉଛି ଆକାଶ ! ପୃଥିବୀ ଏକ କାପାଳିକ ! ମୁଁ ଏକ ନରମୁଣ୍ଡର ଖପୁରୀ ! ତୁମେ ଶ୍ମଶାନ ତୁଳସୀ ! ଯୂପରେ ଈଶ୍ୱରଙ୍କ ବେକ ! ତାକୁ ହାଣୁଚି ମୋ ଭାଗ୍ୟର ଖଡ଼୍ଗ !

ନିଅରେ ଦେବୀ, ନିଅ ! ତୋ ସୁଛାର ତୃଷ୍ଣାକୁ ରକ୍ତରେ ରଂଜେଇ ଦିଅ !

ଦିବସଟା ଯୌବନକୁ ଉପଭୋଗ ନ କରି ଥିବା ଜଣେ ମଧ୍ୟବୟସ୍କା ବିଧବା ! ଜୀବନଟା ଘାସ ବୁଣା; ନିସ୍ତରଙ୍ଗ ଲାଗେ ଯେମିତି ପଡ଼ିଆ ଗୋଟେ ! ଆହତ ଆହତ ଲାଗେ ବଂଚିବାର ତାରା ଭର୍ତ୍ତି ରାତ୍ରି ! ଶୀତଳ ପବନ ବୋଧ ହୁଏ ବଡ଼ ଅବୁଝା !

ଆଖି ବଦଳୁଚି ଅନାବନା ବନସ୍ତଟେପରି !

ନଈ ବଦଳୁଚି ଅନତିକ୍ରମ୍ୟ ସିକତାର ଶୃଙ୍ଖଳା ଶାଢ଼ୀରେ !

ସମୟ ବଦଳୁଚି ଏକ ପରିତ୍ୟକ୍ତ ଭଙ୍ଗା କୋକେଇରେ ! ଲକ୍ଷ୍ୟର ଗଛ ବଦଳୁଛି ଡେଣା ଲଗା ଏକ ପ୍ରଜାପତି କିଂବା ଉଡ଼ନ୍ତା ମାଛରେ ! ସଦ୍ୟ ସଜଡ଼ା ବଂଚିବା ବାସିଦ୍ରବ୍ୟ ମାଛିବସା ଖାଦ୍ୟପରି ଲାଗୁଛି ଘୃଣା ! କିନ୍ତୁ ପ୍ରତୀକ୍ଷାଟା ତ ଧଳା କାନ୍‌ଭାସପରି; ଅନିବାର୍ଯ୍ୟ !

ଟ୍ରେନ ଦୌଡୁଛି ! ଅସ୍ଥିର ଗୋଟେ ଇତିହାସ ଦୌଡୁଛି ଅନାଗତ ଏକ ଟନେଲ୍ ଭିତରକୁ ! ସମୟ ଦୌଡ଼େ କୁଆଡ଼େ; ତୁମେ ଜାଣିଚ ଜୟନ୍ତୀ ?

ତୁମେ ଏକ ମଧ୍ୟ ଯୁଗୀୟ ଆର୍ଟ ! ପ୍ରତୀକ୍ଷାର ନୀଳ ସ୍ୟାହିରେ ମୁଁ ଆଙ୍କୁଚି ଆକାଶ ? ଆକାଶଟା ସିନା ସବୁବେଳେ ଏକ ବଚନ ମାତ୍ର ବଡ଼ ଅସୀମ ! ତୁମ ଆଖିର ନୀଳିମାରେ, ତୁମ ଓଠର ଲାଲିମାରେ, ତୁମ ଚର୍ମର କନିଅର ପାଖୁଡ଼ାରେ ଆକାଶର ତାଜ୍ ମହଲକୁ ମୁଁ ଦେଖି ପାରୁଛି; ଜୟନ୍ତୀ ! ଆକାଶର ଦର୍ପଣରେ ମୁଁ ଦେଖି ପାରୁଚି ସମୟପରି ବଳେଇ ପଡୁଥିବା ମୋ ମୁହଁରେ ମାଂସର ଆକୃତି ! ଚର୍ମର ଚିକ୍‌କଣ ନକ୍ସାରେ ନଖରେ ପେନ୍‌ସିଲର ଗାର ! ସବୁ ଭୁଲ ପ୍ଲାନ୍ !

ଏ ପ୍ଲାନ୍‌ରେ ତୋଳାଯାଇ ନପାରେ ଘର ! ସବୁ ଅସ୍ପଷ୍ଟ ।

ମଣିଷର ଜୀବନଟା ଯେ କେତେବେଳେ ଥିଲା ସ୍ପଷ୍ଟ ? ଗଣିତକୁ ବୁଝିହେବ, ମଣିଷକୁ ନୁହେଁ !... ହଁ, ତୁମସହ ମୋର ପ୍ରଥମ ଦେଖା ଅପ୍ରେଲ ଚାରି ତାରିଖ ପୂର୍ବାହ୍ନ ଏଗାରଟା ! ତୁମେ ବସିଥିଲ ମୋ ସାମ୍ନା ସିଟ୍‌ରେ । ଶାନ୍ତ, ନିର୍ମଳ ଓ କୋମଳ ପାଖୁଡ଼ାରେ ନିର୍ମିତ ଫୁଲର ଗୋଟିଏ ମୂର୍ତ୍ତି ! ତୁମକୁ ମୁଁ ଅନେଇଚି ! ତୁମ ସୌନ୍ଦର୍ଯ୍ୟର ସ୍ୱର୍ଣ୍ଣ ଗଙ୍ଗାରୁ ମୋ ଆଖିର ଓଠ ଲେଉଟୁଛି ଖୋଜି ଖୋଜି ସଂପର୍କର ତୁଠ । ପୁଣି ତୁମ ସଂପର୍କର ଫୁଲ ମୋର ବା ହେବ କ'ଣ; ଭାବି ! ଯେହେତୁ ମୁଁ ନିଜେ ଏକ ଅପଦେବତା । ନର ମୁଣ୍ଡର ଖପୁରୀ ! କପାଳିକ ଉତ୍ସର୍ଗିଛି ମୋ ଭିତରେ କୁତ୍ସିତ ଆସବ କିଛି !

ଚହ ଚହ ମଂଦାର ଫୁଲ ! ଝୁଣା ଧୂଆଁ ଓ ପବନରେ ଝୁଣା ଏବଂ ଆସବର ଶ୍ୱାସରୁଦ୍ଧ ଗଂଧ ! ବର୍ତ୍ତମାନର ସଡ଼କଟିପରି ଖାଲ ଢିପ, ଗୋଡ଼ି ଓ ପଥରର ପ୍ରତିବଂଧକ ଅତ୍ୟନ୍ତ ଅସହ୍ୟ । ନୂଆ ଅଭ୍ୟାସ ଓ ନୂତନ ଆଶା ଭବିଷ୍ୟତ ଛକରେ ବିକ୍ରୟ ହେଉଥିବା ଫମ୍ପା ବୋତଲ ! କିଛି ଯାଏ ଆସେ କାହିଁ, ଯଦି ଭାଙ୍ଗି ଖଣ୍ଡ ଖଣ୍ଡ ଖସି ପଡ଼େ ପ୍ଲାଇଉଡ୍‌ର ଆକାଶ ? କପାଳ ଉପରେ ଉଡ଼ନ୍ତା କେଶପରି ମୋର ଜୀବନଟା ଅତ୍ୟନ୍ତ ବିଶୃଙ୍ଖଳିତ; କି ବିପର୍ଯ୍ୟୟ ଗ୍ରସ୍ତ !

ଜୟନ୍ତୀ, ତୁମ ଗାଁର ଉପତ୍ୟକାକୁ ମୁଁ ବାହାରି ଆସିଛି ।

ପୁରୀରୁ ଟ୍ରେନ୍ ଦୌଡୁଚି; ଜାନକୀ ଦେଇପୁର, ମାଳତୀ ପାଟପୁର, ସାକ୍ଷୀଗୋପାଳ ଓ ଡ଼େଲାଙ୍ଗରୁ ଖୋର୍ଦ୍ଧାରୋଡ଼ । ଖୋର୍ଦ୍ଧାରୁ ମଂଚେଶ୍ୱର, ଭାୟା ନରାଜ ଦେଇ ପହଞ୍ଚିବ ଯାଜପୁର ରୋଡ଼ । ମାତ୍ର ଏକଶତ ସତାଅଶୀ କିଲୋମିଟର ! ସକାଳ ନ'ରୁ ରାତି ଆଠଟା ପନ୍ଦର ! ଏସିଆ ମହାଦେଶରେ ସବୁଠୁ ବିଳମ୍ବରେ ଯେଉଁ ଟ୍ରେନ୍ ଚାଲେ ତା ନାଁ ଫାଇଭ ଡ଼ାଉନ୍, ୨୦୨ ନମ୍ବର ପୁରୀ ହାଓଡ଼ା ପାସେଂଜର । ପୁରୀରୁ ବାରଙ୍ଗ ମାତ୍ର ଅଶୀ କିଲୋମିଟର; ନିର୍ଦ୍ଧାରିତ ସମୟରୁ ବିଳମ୍ବରେ ଚାଲେ ମାତ୍ର୧୮୦ ମିନିଟ୍ । ଟ୍ରେନ୍ ଟି ଟ୍ରେନ ନୁହେଁ; ଯାତ୍ରୀଙ୍କ ପାଇଁ ଅଭିଶାପ ଯେମିତି !

ତୁମ ଗାଁକୁ ମୁଁ ସେଇ ଟ୍ରେନରେ ଉଠିଚି । ନା ପାଣି, ନା ପାଇଖାନା, ନା ପଙ୍ଖା, ନାହିଁ ଝରକାରେ ଘୋଡ଼ଣୀ ବା କାଚ । ଏହି ଟ୍ରେନ୍‌ପରି ଦକ୍ଷିଣ-ପୂର୍ବ ରେଳପଥ ପ୍ରଶାସନ କି ବିଶୃଙ୍ଖଳିତ ! ଠିକ୍ ଇମିତି ବିପର୍ଯ୍ୟୟଗ୍ରସ୍ତ ଆମ ଜୀବନ ? ରାଜନୀତି, ଅର୍ଥନୀତି ଓ ସମାଜନୀତି ସମସ୍ତଙ୍କର ଚଳନ୍ତି ପ୍ରତୀକ ଫାଇଭ ଡାଉନ୍ ଟ୍ରେନଟି, ନୁହେଁ ?

ସମୟ କାହାକୁ କହନ୍ତି; ଖୋର୍ଦ୍ଧାରୋଡ଼ ରେଲ ଡ଼ିଭିଜନ ପ୍ରଶାସନ ଦାୟିତ୍ୱରେ ଥିବା କେହି କର୍ମଚାରୀ ଜାଣନ୍ତି ?..... 'ଦି ଇଣ୍ଡିଆନ ଏକ୍ସପ୍ରେସ୍' ଭୁବନେଶ୍ୱର ସଂସ୍କରଣ ପ୍ରଥମ ଉଦ୍‌ଘାଟିତ ସଂଖ୍ୟାରେ ଶାନ୍ତନୁ ଆଚାର୍ଯ୍ୟ କହିଛନ୍ତି 'ଓଡ଼ିଆମାନେ ଶିକ୍ଷିତ କୁଲୀ' । ରେଳ ଡିଭିଜନ ଦାୟିତ୍ୱରେ ଥିବା ତେଲୁଗୁମାନେ ?..... ଟ୍ରେନ୍ ଯେତେବେଳେ ପହଂଚିଲା ଖୋର୍ଦ୍ଧାରୋଡ଼ରେ ମୁଁ ଭାବିଲି ଏଇଟା ଓଡ଼ିଶା ନୁହେଁ ଆନ୍ଧ୍ର ! ସାରା ଷ୍ଟେସନ୍ ତେଲୁଗୁ ଗାତୁ ମାତୁ ଓ ପିକା ଗନ୍ଧ ! ପାଚିଲା କଦଳୀ, ଦହିପାଣି, ଚା' ଓ ଇଟିଲ୍ ବିକ୍ରେତା ତେଲେଙ୍ଗା କିମ୍ବା ତେଲେଙ୍ଗାଣୀ ! ଷ୍ଟଲ୍‌ରେ ତେଲୁଗୁ, ହିନ୍ଦୀ ଓ ଇଂଲିଶ୍ ମାଗାଜିନ୍ । ବିକ୍ରୀ ହେଉଛି ବହି ଓଡ଼ିଆ, ବଙ୍ଗଳା ଓ ତେଲୁଗୁ ଶିକ୍ଷା, ତାସ, ପାନିଆ, ପାଣିର ବୋତଲ ଓ ରେଲ୍ ସମୟ ନିର୍ଘଣ୍ଟ । ଅଥଚ.....

ଝର୍କା କଡ଼କୁ ଗୋଟିକିଆ ସିଟ୍‌ରେ ମୁଁ ଆଉଜି ବସିଲି । ବଗିଟା ଖୁବ୍ ଫାଙ୍କାଫାଙ୍କା ଲାଗୁଚି । ହଠାତ୍ ଦୁଇ ଝୁଡ଼ି ସଢ଼ାମାଛ ବଗି ଭିତରକୁ ଉଠାଇ ତାକୁ ପାଇଖାନା ଭିତରେ ବଂଦ କରି ରଖିଦେଲା କେହି । ଜଣେ ରେଲ୍ ପୁଲିସ୍ ମାଛ ବାଲାକୁ ତା'ବଟି କି ବକ୍‌ସିସ୍ ମାଗୁଛି ? ଲୋକଟି ବଢ଼ାଇଦେଲା ଟଙ୍କା କେତୋଟି ଯେମିତି ମହା ଦାନୀ । ତା'ପରେ ଦୁଇଜଣ ଯୁବକ; କାନ୍ଧରେ ଝୁଲୁଚି ପ୍ଲାଷ୍ଟିକ୍ ବ୍ୟାଗ୍, ହାତରେ ଡଟ୍ ପେନ୍ ଓ ଛୋଟ ଛୋଟ ଖଣ୍ଡେ ଖାତା ।

ଟିଟିଇ, ଟିଟିଇ..... ଗୋଟିଏ ଗୁଂଜରଣ ଖେଳିଗଲା । ବଗି ଭିତରୁ ତଳକୁ ଓହ୍ଲାଇଗଲେ କେତେଜଣ । ମାଛବାଲା ସହିତ ସେମାନଙ୍କ ଆରମ୍ଭ ହେଲା ମୂଲଚାଲ । ମାଛ କ୍ରୟ ବିକ୍ରୟର ନୁହେଁ; ସେମାନଙ୍କ ଆୟର !

ରେଲ୍ ଷ୍ଟେସନ୍‌ରେ ମୋତେ କିଛି ଭଲ ଦୃଶ୍ୟ ଦେଖିବାକୁ ମିଳୁନଥିଲା ନା' ମୋ ଚକ୍ଷୁ ଦୁଇଟା ଅସୁସ୍ଥ ହୋଇଯାଇଥିଲେ ? ମୁଁ ଚକ୍ଷୁ ବନ୍ଦ କରିଦେଲି ।

..... ମୁଁ ଶୋଇଯିବି ?

ଶୋଇଶୋଇ ଅାଁଦ୍ରେ ଜିଦ୍‌ଙ୍କ ପରି ସ୍ୱପ୍ନ ଦେଖିବି ! ତୁମରି ସ୍ୱପ୍ନ ?

ଏଥର ମୁଁ ଚାରିଜଣିଆ ଫାଙ୍କା ସିଟ୍ ଉପରେ ନିଜକୁ ବିଛଣାଟିଏପରି ଲମ୍ୱାଇ ଦେଲି । ଟ୍ରେନ୍ କେତେବେଳେ ଗର୍ଜି ହଲିଦୋହଲି ଖୋର୍ଦ୍ଧା ଛାଡ଼ିଲା କେଜାଣି ! ଜୀବନକୁ ଜନ୍ମ ଦିଏ ପ୍ରେମ ! ପ୍ରେମର ମଧୁଜ୍ୱାଳା ସଂଚରି ଗଲେ ପହଂଚେ ପୁଲକ ପର୍ବ । ମିଳେ ସୁବୃହତ ଗୋଟେ ମେଘ ଉଚ୍ଚ ଜୀବନର ଠାବ । ସେ ଜୀବନ ବିଶ୍ୱର ଗୌରବ । ସଂସାରକୁ ସାର୍ଥକ କରିଦିଏ, କରିଦିଏ ମହିମାମୟ ତା ଜନ୍ମ !

ଶୁଣିଚ ତୁମେ କେଦାର-ଗୌରୀଙ୍କ ପ୍ରଣୟ ଓ ତ୍ୟାଗ ?

ମଣିଷ ଶାମୁକାପରି ହୋଇଚି ଜନ୍ମ । ସ୍ୱାତୀ ନକ୍ଷତ୍ରର ମଧୁଜଳ ଠୋପା ତା' ଗର୍ଭର ମଧୁକୋଷରେ ଭରିଦେଲେ ବର୍ଷା; ଜନ୍ମ ନିଏ ମୁକ୍ତା । ଠିକ୍ ସେମିତି ମାନବର ଜୈବିକ ହୃଦୟରେ ଥରେ ସୃଷ୍ଟି ହେଲେ ଭଲ ପାଇବାର ମୁକ୍ତା, ତା' ତେଜରେ ପ୍ରଶସ୍ତ ହୋଇଯାଏ ବଂଚିବାର ରାସ୍ତା !

ଭଲ ପାଇବା ହିଁ ଜୀବନ । ଭଲ ପାଇବାକୁ ବାଦଦେଲେ ଦେହ ଗୋଟାଏ ଶବ । 'ଇଛିତ ବୃକ୍ଷତଳେ' ହାନସ୍ ଆଣ୍ଡେରସନ୍‌ଙ୍କ ଗପ । ନାୟକ ଜାଣିଚି ଅଧିକ ମସଲା ଯୁକ୍ତ ରୁଟି କରୁଥିବା ଯୁବତୀଠୁ; ପିଲାବେଳେ ପଢ଼ିଥିବା ଗପରୁ ପ୍ରଥମେ ପୁରୁଷକୁ ହିଁ ମୁହଁ ଖୋଲି କହିବାକୁ ପଡ଼େ ନାରୀକୁ ନିଜ ଭଲ ପାଇବା କଥା । ଜହ୍ନ ହିଁ ପ୍ରଥମେ ମୁହଁ ଖୋଲି ବିଛେଇବ ନିଜ ଭଲ ପାଇବାର ଜ୍ୟୋସ୍ନା । ପ୍ରତ୍ୟୁତ୍ତରରେ ଚୁପିଚୁପି ହସିବ ଶ୍ୟାମଳୀ ବାଳିକା; ମାଧ୍ୟାକର୍ଷଣ ଶିଡ଼ିର ଶୃଙ୍ଖଳାରେ ବଂଧା ହୋଇଥିବା ଏଇ ପୃଥିବୀଟା !

କୁଂଦ୍ ତେଣୁ ପ୍ରଥମେ ଖୋଲି ଦେଇଛି ନିଜ ମନର ଲଫାଫା; ନାୟିକା ଜୁଆନା ପଢ଼ିଛି କୁଂଦ୍ ଇଛାର ନୀଳଚିଠି ! ତାକୁ ରବିବାରକୁ ନିମନ୍ତ୍ରିଛି ।

'ମୋ ଅଳନ୍ଧୁ ଲଗା ଗାଁକୁ ତମେ ଆସିବ । ତମ ପାଇଁ ମୋ ନିମନ୍ତ୍ରଣ ରହିଲା ! ନାୟିକା ଜୁଆନା ପରି ତା' ଗାଁକୁ ଡାକିଚି ମତେ ଜୟନ୍ତୀ । ରବିବାର ଆସିଛି, କୁଂଦ୍ ଯାଉଛି, ଯେମିତି ତା' ଗାଁକୁ ନୁହେଁ; ଗୋଟିଏ ଚର୍ଚ୍ଚକୁ ! ଅଭିସାର ହୋଇ ଯାଉଛି ପର୍ଯ୍ୟାପ୍ତ ପବିତ୍ର ଏକ ତୀର୍ଥ ଯାତ୍ରା ! କାମ ହୋଇଯାଏ ବ୍ରହ୍ମାନନ୍ଦ ସହୋଦର ତୃପ୍ତି, ପ୍ରାପ୍ତିବେଳେ ଯେମିତି ଧ୍ୟାନ !

ଅବଶ୍ୟ ସଂସାରର ଗୋଟିଏ ବିଫଳ ଫଳ ଆଣ୍ଡେରସନ୍‌ଙ୍କ ଜୀବନ ! ମାତ୍ର ତାଙ୍କ ୧୫୬ଟି ଗପ ପ୍ରାୟ ଏକଶହ ଭାଷାରେ ଅନୁବାଦିତ ବିଶ୍ୱର ଅମୃତ । ସେହି ଆଣ୍ଡେରସନ୍..... ହାତରେ ଲୁଗା ବୁଜୁଳି...... ଦେଖିବାକୁ ଜଣେ ଭିକାରୀ, ଚାଲି ଆସିଥିଲେ ନିଜ ଗାଁ ମାଟି ଛାଡ଼ି ଚରମ ନିର୍ଯ୍ୟାତନା ସହିନପାରି ସହର କୋପେନ୍‌ହେଗ୍‌କୁ ନିଜର ଭବିଷ୍ୟତ ଖୋଜି ।

ପିଆଜର ପାଖୁଡ଼ା ଗୁଡ଼ାକ ଛଡ଼େଇ ସାରିଲା ପରେ ମଞ୍ଜି କ'ଣ ମିଳେ ? କେତେ ଜଣଙ୍କ ଭାଗ୍ୟରେ କୁହୁକ ଦୀପର ଭବିଷ୍ୟତ ହାବୁଡ଼େ ?

ବିଂଶ ଶତାବ୍ଦୀର ମଣିଷମାନେ ଅଭାଗା ।

ସେମାନଙ୍କ ସାହିତ୍ୟ ? ନିଜ ସମୟର ସମାଲୋଚନା !

ଏକବିଂଶ ଶତକର ସବୁ ମଣିଷ ହେବେ ପାଗଳା ! ନିୟୁରୋଟିକ୍ ରୋଗୀ ! ସବୁ ହେବେ ଦାମୀ ସାଇକିଆଟ୍ରିକ୍ ! ଏକବିଂଶ ଶତକର ସାହିତ୍ୟ ହେବ ମନସ୍ତତ୍ତ୍ୱର ପର୍ଯ୍ୟାଲୋଚନା ଓ ଦର୍ଶନର ନିର୍ଯ୍ୟାସ । ବୈଷୟିକ ଅଣନିଶ୍ୱାସୀ ମଣିଷ ସେଇଠୁ ଖୋଜିପାଇବ ତା' ପ୍ରଶ୍ୱାସ !

ଏଠି କାହିଁକି ଉଠୁଚି ସାହିତ୍ୟର କଥା ଯେ ?

ସାହିତ୍ୟର ପ୍ରସଙ୍ଗ ଆସୁନି, ଆସୁଚି ମଣିଷର କଥା !

ସାହିତ୍ୟ ମଣିଷର ଭଲ ପାଇବା ! ସାହିତ୍ୟର ଆଙ୍ଗିକ ମଣିଷର ପ୍ରେମିକା ! ସାହିତ୍ୟର ଆତ୍ମିକ ତା' ମୈଥୁନିକ ସୁଖ ! ତୃପ୍ତିଠୁ ଅଲଗା ହେବ କେମିତି ମୁକ୍ତିର ପିୟୁଷ ?

ଜୟନ୍ତୀ କବିତା ଲେଖେ । ତା' ଆବୃତ୍ତିରେ କଣ୍ଠ ପାରସ୍ୟ ରଜନୀର କୁହୁକ ରଚେ ।

ମଧୁକ୍ଷରା ଓଠରୁ ତା' କବିତା ଝରେନି; ଝରେ ପାଖୁଡ଼ା ପାଖୁଡ଼ା ସଂପର୍କ ! କବିତା ତ ଆଇସୋଲେସନ୍‌ରୁ ଆରମ୍ଭ ହୁଏନି, କବିତା ସୃଷ୍ଟି ହୁଏ ରିଲେସନ୍‌ରୁ ! ବସ୍ତୁମାନଙ୍କ ବଳୟ ଭିତରେ ଚଳୁଥାନ୍ତି କବି । ତାଙ୍କ ବହିଃର୍ଦୃଷ୍ଟି ଓ ଅନ୍ତର୍ଦୃଷ୍ଟିର ବାତାୟନ ଥାଏ ଉନ୍ମୁକ୍ତ । ହଠାତ୍ କେଉଁ ଏକ ବସ୍ତୁ ତାଙ୍କ ଅନ୍ତର୍ଦୃଷ୍ଟିକୁ ସ୍ପର୍ଶ କରିଦେଲେ ଗନ୍ଧ ଓ ରୂପ ସ୍ୱତଃ ଛୁଇଁଯାଏ ତାଙ୍କ ଆତ୍ମଜଗତ । ଭିତରର ନିଃସଙ୍ଗତା ଶବ୍ଦଙ୍କ ଆତ୍ମୀୟତା ପୋଛି ଆଣେ ହଠାତ୍ ! ସାମ୍ନାରେ ଠିଆ ହୁଏ ସୁଠାମ ଶିଳ୍ପଟିଏ - କବିତା ! ବସ୍ତୁବ୍ୟୂହର କେନ୍ଦ୍ରରୁ ବ୍ରହ୍ମାଣ୍ଡର ବୈଚିତ୍ର୍ୟକୁ ଦେଖୁଦେଖୁ ବିହ୍ୱଳ କବି ନିଜ ଆବେଗଦୀପ୍ତ ଭାବସଂବେଗକୁ କରିବସନ୍ତି ଆବୃତ୍ତି ।

ଜୟନ୍ତୀ କିଛି ଦେଖେ ନାହିଁ କି ଲେଖେ ନାହିଁ ଗଢ଼ି ଚାଲେ ଖାଲି ଶବ୍ଦଚିତ୍ର । କବିତା ଏକ ସତ୍ତା ନିଃସତ୍ତାରୁ ସ୍ୱତଃ ନିଏ ରୂପ । ନୀରବତା ହୁଏ ସଂଗୀତମୟ; ହୁଏ ଅର୍ଥବାନ୍ । ବସ୍ତୁ ଭାବ ସୃଷ୍ଟି କରୁଛି, ତାହା ହୋଇଯାଉଛି ଭବ ! ଅବ୍‌ଜେକ୍ଟିଭ ।

କବିଙ୍କ ସୃଷ୍ଟିକ୍ଷମ ମନ ଅନୁଭବକୁ ବୁଦ୍ଧିର ଅନ୍ୱେଷଣ ପ୍ରବୃତ୍ତି ପାଖକୁ ପଠାନ୍ତି । ବୁଦ୍ଧି ଓ ହୃଦୟାବେଗ କବିତାର ଉଦୟରେ ହୁଅନ୍ତି ସହାୟକ । ଚିତ୍ତବୃତ୍ତି ଓ ବୁଦ୍ଧି ଆବେଗକୁ କରି ପକାନ୍ତି ବସ୍ତୁ । ରହସ୍ୟ ଓ ଜିଜ୍ଞାସା ପରସ୍ପର ପରିପୂରକ ହୋଇଯାନ୍ତି କବିତାର ଆତ୍ମା ।

ଜୟନ୍ତୀ, ତୁମ କବିତା ତୁମ ଆଖି ଦୁଇଟି ପରି ମତେ ଖୁବ୍ ଭଲ ଲାଗିଚି । ତୁମଠୁ ଅଧିକ ଭଲ । କବିତା ତୁମ ହୃଦୟର ଶାଶ୍ୱତ ପୁରୁଷ । କିନ୍ତୁ ତୁମେ ସୁନାମୃଗ । ମତେ ଧରା ଦେବ ତ' ? ସୁବର୍ଣ୍ଣ ମୃଗ ପାଇଥିଲେ ବାଲ୍ମୀକିଙ୍କ ନାୟକ ?.... ତୁମେ ମୋର ବେନାମୀ ପୁଷ; ତୁମେ ମୋର ଚାହାଁଣି ମଣ୍ଡପ; ତୁମେ ମୋର ଏକାଏକା ସହବାସ ! ତୁମେ ମୋ ଆଦିମବାଦର ନିଷ୍କଳଙ୍କ ଭାଗବତ ! ତୁମେ ମୋ ବ୍ୟଂଜନାର ନିତ୍ୟ ସ୍ୱରୂପ ।

ଛିନ୍ନବିଛିନ୍ନ ମୋ ମୃତ ଆତ୍ମାର ଇଏ ନବକଳେବର ! ତୀର୍ଥାଶ୍ରୟୀ ସ୍ୱୟଂ ମ୍ରିୟମାଣ ଚେତନାର ସ୍ୱରଲିପିକୁ ମୁଁ କରୁଛି ଅଭିଷିକ୍ତ ତୁମ ସଂପର୍କର ସ୍ୱର୍ଗୀୟ ଗଙ୍ଗା ସଲିଳରେ । ମଟମଟ ଡ଼ାକେ ଦୂର ଭବିଷ୍ୟତ !

ସୋମନାଥର ସମୁଦ୍‌ଥିତ ଜ୍ୟୋର୍ତିଲିଙ୍ଗ ଏବେ !



# ଅବିନାଶୀ ବେଦନାର ଗର୍ଭନାଡ଼

ଜୟନ୍ତୀ, ତୁମେ ମୋର ପ୍ରଥମ ପ୍ରେମ; ସ୍ୱପ୍ନର ସୁଖୀ ମାୟାମୃଗ ! ମୁଁ ତୁମ ଅନ୍ତର୍ଭେଦୀ ସ୍ୱଚ୍ଛ ସଂପର୍କର ବର୍ଣ୍ଣରେ ନିମଗ୍ନ । ତୁମ ସ୍ମୃତି ଉଦ୍‌ବିଗ୍ନ ମୁଁ; ଅତି ଅନ୍ୟମନସ୍କ ଜଣେ ସାଧାରଣ ପୁରୁଷ । ନୀରବ ଯନ୍ତ୍ରଣାରେ ଫୁଙ୍କୁଳା ଅନୁରାଗ ମୋର । ଫୁଲଠୁ ଆଶାଶୂନ୍ୟ, କାରୁଣ୍ୟ ଓ ଜଗତର ନିଷ୍ଠୁରତାକୁ କ'ଣ କାମନା କରେ ଭ୍ରମର ?

ତୁମେ ମୋର ଯୁବତୀ ଜହ୍ନ । ଗୋଟିଏ ନୂଆ କ୍ରୀମ୍‌ପରି ଚିକ୍‌କଣ ଓ ସୁଗନ୍ଧପ୍ରଦ ତୁମ ଚର୍ମ । ତୁମର ସୁପ୍ରିମ୍ ମିଶନ ହେଲା ମିଳନ । କେଡ଼େ ପରିଷ୍କୃତ ଓ ସୁଗନ୍ଧପ୍ରଦ ତୁମ ମାଂସ ଜୟନ୍ତୀ, ତୁମେ ଚଳମାନ ସଂସ୍କୃତିର ଜୀବନ୍ତ ପୋଷାକ !

ନାରୀ କଣ ?

ନାରୀ ଟଙ୍କାଠୁ ଉଜ୍ଜ୍ୱଳ; ସେ ନୁହେଁ ଖଣିଜ ଚକ୍‌ଚକ୍ ତୁଛ ଖଣ୍ଡେ ହୀରକ ! ସିଏ ନିଜେ ନିଜେ ଏକ ଚର୍ଚ୍ଚ ! ତା' ସାରା ସତ୍ତା ମାନବିକତାରେ ଚହଟହ ଫୁଟନ୍ତା ଧବଳ । ଉଡ଼ନ୍ତା କଣେୟର ବଉଦକୁ ଦୀର୍ଣ୍ଣ କରି ଉଜ୍ଜ୍ୱଳି ଉଠେ ତା' ବକ୍ଷରେ ଭାରଭାର ପଦ୍ମର ଅପୂର୍ବ ମଣ୍ଡଳ ! କୁଚାଗ୍ର ଗୋଲ ଗୋଲ ରକ୍ତ ପ୍ରବାଳ ! ତା' ଆୟତନ ଓ ଆକୃତି ତା' ଅଳଙ୍କାର ! ଜୟନ୍ତୀ, ତୁମ ସ୍ତନ ଫୁଟନ୍ତା ଜହ୍ନ ! ମୁକୁଳା ସ୍ତନାଗ୍ର ପ୍ରସ୍ଫୁଟିତ ହେବାକୁ ଦୀର୍ଘ ପ୍ରତୀକ୍ଷିତ ହକେ

ରକ୍ତ ମଂଦାର କଢ଼ ! ମୋ ଛାତିରେ ତୁମେ ଘଷି ଦେଉଛ ତୁମ ସଂଜୀବନୀ ମନ୍ତ୍ର ! ମୃତ ଲାଜାରସ ଏବେ ଜୀବନ ଲଭିବ ? ବିଶ୍ୱାସ ଏବେ ନିଃଶ୍ୱାସ ଭରିବ । ଲୋଚାକୋଚା ସାଦା ବର୍ତ୍ତମାନ ଅତୀତ ହୋଇ ନେବ  ନବଜନ୍ମ ?

ତୁମ ମୁହଁ, ଯେଉଁଠି ଫୁଟେ ହସର ହଳଦିଆ ଗୋଲାପ; ଇଛାର ହାତ ଲମ୍ବିଯାଏ ବୃନ୍ତ ତଳକୁ । ତୋଳି ନେଲେ ସୌନ୍ଦର୍ଯ୍ୟ ମିଳିବ ତ ? ପୁଣି ଫେରିଆସେ ପଛକୁ । ଅଭିଳାଷ ଜନ୍ମ ହେଲେ ଆରମ୍ଭ ହୁଏ ସୁଖ । ସୁଖର ଆର୍ଟ କିନ୍ତୁ ଅତ୍ୟନ୍ତ କଠିନ । ଆନନ୍ଦ ଏକ ପୁଷ୍ପ; ନାରୀ ସ୍ତନର ଉଚ୍ଚତା ଓ ଗୋଲେଇରୁ ହୁଏ ପ୍ରସ୍ଫୁଟିତ ! ତୁମ କେଶ; ଯେଉଁଠି ବସାବାନ୍ଧିଛି ମୋ ସୁଖର ପକ୍ଷୀ । ଖୋଲି ଦେଲେ ବର୍ଷା ଋତୁର ଆକାଶ ତଳେ ପହଁରି ଯିବେ ଦଳେ ପକ୍ଷୀ ।

ମୋ ତୁମା; ବୁଝେଇ ଦିଏ ଓଠ ମୋ କଥା ।

'କ୍ୟାନ୍ ୟୁ ଲଭ୍ ମି ?' ମୁଁ ତୁମକୁ ପଚାରି ଦେଲି ।

ତୁମେ ମୋ କବିତାକୁ ମଂଦ ଭାବରେ କଲ ଗ୍ରହଣ । ଅଶ୍ୱ ମୁହଁରେ ଯେମିତି ନଥିଲା ଲଗାମ ! ପ୍ରତ୍ୟେକ ନାରୀ ଖୋଜନ୍ତି କ'ଣ ?

'ଶଂଖା ଦି' ପଟ ଓ ବୁଂଦାଏ ସିନ୍ଦୁର; ଥିଲା ବୁଢ଼ାମାଷ୍ଟ୍ରେଙ୍କ ଉତ୍ତର ! ମାତ୍ର ସବୁ ନାରୀ ଖୋଜନ୍ତି ଗୋଟିଏ ଦ୍ରବ୍ୟ; ତା ନାଁ ସୁଖ । ଜୟନ୍ତୀ, ତୁମ ଅନୁଭବରେ ଭର୍ତ୍ତି ହୋଇରହିଛି କବିତା ଧାଡ଼ିଧାଡ଼ି । ତୁମର ଚାହାଣିରେ, ତୁମ ଚାଲିରେ କବିତା ଫୁଟୁଛି । କଳାକଳା ତୁମ ଚପଲ ଦିଓଟି ଭିତରେ ପଦ୍ମ କଢ଼ ପରି ଆରକ୍ତ ତୁମ ପାଦ ଦୁଇଟି, ସେଇ ପ୍ରଥମ ଦେଖାବେଳେ ମୁଁ ଦେଖିଚି, ଥାକଥାକ କବିତା ସଂଚିଛି !

ଜୟନ୍ତୀ, ମୁଁ ତୁମ ବିଷୟରେ ଲେଖିଚି । କାରଣ ଦି ମ୍ୟାନ୍ ଇଜ୍ ଏ ସବ୍‌ଜେକ୍ଟ; ଇଜ୍ ହି ? ପୁରୁଷ ବିଷୟରେ କ'ଣ ଲେଖାଯାଇପାରେ କିଛି ? ସଂସାରରେ ନାରୀଠୁ ସୁନ୍ଦରତମ ବିଷୟବସ୍ତୁ ଆଉ କ'ଣ ଅଛି ?

ଅପ୍‌ଡ଼ାଇକ୍‌ଙ୍କ ଯୁବତୀ ନାୟିକା ପଚାରିଛି, 'ମୋ ପାଇଁ ତୁମେ ଗୋଟାଏ ମଣିଷକୁ ମାରି ପାରିବ' ? 'ଜଣକୁ କ'ଣ, ଦୁଇ ଜଣଙ୍କୁ' । କହିଥିଲା ଯୁଜିନ୍ ।

'ତୁମେ ଶିଶୁ । ହଁ, ତୁମେ ଗୋଟାଏ ଶିଶୁ । ନିଷ୍ପାପର ଭାବେ ମତେ ଭଲପାଇ

ପାରିବ ?' ପୁଣି ପଚାରିଛି ।

'କିଏ ରାଜିହେବ ମତେ ଶିଖାଇ ଦେବାକୁ ଯାହାକୁ ତୁମେ ସ୍ତ୍ରୀ ଲୋକମାନେ କୁହ ଜୀବନ; ଏତେ ଭଲଭାବେ !' କହିଛି ନାୟକ ।

'ସଂସାରଟା ଅନର୍ଗଳ ମଛରତା ପୂର୍ଣ୍ଣ । ଆସ ଏହା ଓଜନର ଉର୍ଦ୍ଧ୍ୱକୁ; ଯେଉଁଠି ଏହାର ଭିତ୍ତିରେ ନଥିବ ଘୃଣା ଓ ଅସୁସ୍ଥ ପ୍ରକୃତି । ସେଇଠି ଆମେ ଜୀବନକୁ ବୁଣିବା । ପୁଣି ନୂଆ କରି ଆମେ କଅଁଳିବା'!

'ସତରେ ତୁମେ କ'ଣ ଏହା ଚାହୁଁଚ ?

ତୁମ ବକ୍ଷୋଜପଦ୍ମ ବ୍ରା'ର କପ୍ ଭିତରେ କେତେ କୋହଳ ହୋଇଝୁଲି ପଡ଼ିଥିଲା ! ଯେମିତି ମୋ ପାପୁଲି ଦୁଇଟାକୁ ଦେଖିବା ପରିବର୍ତ୍ତେ ମତେ ଦେଖି ଦୁହେଁ ହେଲେ ଲାଜୁରା ।

'ତୁମ ଆଖି ମୁଁ ମୋ ପାପୁଲିରେ ବୁଜିଦେବି' ?

'କେତେ ନିରୀହ ଭାବେ ଜୀବନ ଖାଇଚାଲିଛି ଦିବସ ମାନଙ୍କୁ !

ମୁଁ ତୁମ ଇଶ୍ୱରଙ୍କୁ ଅନୁସରଣ କରୁନାହିଁ । ନା ତୁମ ଭଗବାନ ! ତୁମ ଛାତି ଉପରେ ସେଇ ଠିଆ ଠିଆ... ଆଇ ଡ଼ୋଣ୍ଟ ମିନ୍ ଟୁ କଂପ୍ଲେନ୍ ! ମୋ ପାଇଁ ଭଗବାନ ତ୍ୱରିତ ପ୍ରବାହିତ ଚଳିତ ଶତକର ବିଦ୍ୟୁତ୍ । ଇଲେକ୍‌ଟ୍ରୋମାଗନେଟିକ୍ ତରଙ୍ଗକୁ ଚିତ୍ରକରଟିଏ ହୋଇଥିଲେ ଭଗବାନ ବୋଲି ଆଙ୍କି ଦିଅନ୍ତି । ଜୟନ୍ତୀ;ମୁଁ ଜାଣେ ତୁମକୁ ମୁଁ ଭଲ ପାଇ ଭୁଲ କରିଛି । ବ୍ୟକ୍ତିର ଥାଏ ସବୁ; କିନ୍ତୁ ଯିଏ ଆକସ୍ମିକ ଓ ଅହେତୁକ ସବୁ ଘଟାଏ ? ଅଭୀଷ୍ଟ ଲାଭାର୍ଥେ ଠେଲାପେଲା ହୁଏ !

ଏଇଟା ଗୋଟାଏ ଅତ୍ୟନ୍ତ ପ୍ରିମିଟିଭ୍ ଆଟିଚ୍ୟୁଡ୍ । ପ୍ରାକୃତିକ, ଭୁଲ ବା ଠିକ୍ ଲୋକ ଘଟାଏ ଏଇଥି ପାଇଁକି ! ମଣିଷ ସାମାଜିକ ସଂପର୍କଶୀଳ । ସବୁ ସଂପର୍କ ପାଇଥିଲେ ବି ସିଏ ଅତୃପ୍ତ । ତାର ଆହୁରି ଦରକାର ଥାଏ ସେକ୍ସ ! ଅଧିକରୁ ଅଧିକ । ଯେଉଁ ପରିମାଣ ସେକ୍ସ ସିଏ ପାଏ, ତାହାର ପରିମାଣ ଯଥାଯଥ, କିନ୍ତୁ ତା' ସମସ୍ୟା ସରପ୍ଲସ୍; ଏହା ତା'ର ଫଲ୍‌ଟ ! ସେଇଥିପାଇଁ ତୃଷ୍ଣା ତା' ନିର୍ବାପିତ ନ ହୋଇ ତୁମ ଗାଁ ନଈପରି ହୁଏ କୂଳଖାଇ ।

ମଣିଷ ନିୟୁରୋଟିକ୍ ରୋଗୀ । ତୁମେ ଯାହାକର ଛାଣ କର କାହିଁକି ? 'ନା' !

ଚଳନ୍ତା ଟ୍ରେନ୍‌ର ଚାରି ଜଣିଆ ବସିବା ସିଟ୍‌ରେ ଖବରକାଗଜ ଖଣ୍ଡେ ବିଛେଇ ମୁଁ ନିଜକୁ ଲମ୍ବେଇ ଦେଇଛି । ବଂଦ ଅଛି ମୋ ଚକ୍ଷୁ ଦୁଇଟି । ଆଖି ଖୋଲିଲେ ଦେଖାଯାଏ ପର୍ବତମାଳା । ନଈ, ମହୁମାଛି, ଫୁଟନ୍ତା ମଂଦାର ଓ ରକ୍ତ ପ୍ରବାଳର ତୁମ ସ୍ତନାଗ୍ର !

ଆପେଲ୍‌ଟାକୁ ଭାଙ୍ଗିଥିଲା ଅନ୍ୟକିଛି ନୁହେଁ; ଏକ ମାତ୍ର ଇଭ୍‌ର ଚୁଂବନ ! ଜନ୍ମଠୁ ମୃତ୍ୟୁ ଭିତରେ ସ୍ୱଳ୍ପକାଳ ସ୍ଥାୟୀ ଯେଉଁ ନଂଦନକାନନ; ତା ନାଁ ପ୍ରେମ । ଜୟନ୍ତୀ ଲେସ୍‌ବିୟାନ୍ ତୁମ ଚକ୍ଷୁ ଦୁଇଟି କି ନିର୍ମଳ ! ତା ଭିତରେ ଭର୍ତ୍ତି ଆକାଶ । ମୁଁ ଦେଖିଚି ତୁମ ପିଚା ଦୁଇଟି । ସଂପୂର୍ଣ୍ଣ ବିଶ୍ୱସ୍ତ ଗୋଟିଏ ଝିଟିପିଟି; କି ସୁଂଦର ଓହ୍ଲେଇ ଆସିଛି ! ପୁଷ୍କର ତୀର୍ଥରେ ମୁଁ ଛାଡ଼ିଦେଲି ନୀଳ ହଂସକୁ ! ଏଥର ସେ ପହଁରୁ, ଖୁବ୍ ପହଁରୁ ! ଯେଣୁ ମୈଥୁନ ହିଁ ମାନବିକ । ଅଚଳ ବ୍ରହ୍ମଙ୍କ ସୁଖର ସଚଳ ଲୀଳା ! ମୋଟେ ତୁମେ ଲାଜ କରନା ।

ଈଶ୍ୱରଙ୍କୁ ତୁମେ କେବେ ଆଲିଙ୍ଗନ କରିଚ ? କରିନ ନା ? ଆଲିଙ୍ଗନ ହିଁ ନାରୀର ଈଶ୍ୱର । ତୁମେ ଜାଣିଛ, ଟ୍ରାଜେଡ଼ି ଓ କମେଡ଼ି ଭିତରେ ତଫାତ୍ କ'ଣ ? ଏହା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ । ଏବେ ଆମ ସାମ୍ନାରେ ଦୁଇଟି ଲକ୍ଷ୍ୟ; ଗୋଟିଏ ଅପର୍ଯ୍ୟାପ୍ତ ଅର୍ଥାର୍ଜନ ଓ ଅନ୍ୟଟି ଅର୍ଥପ୍ରାପ୍ତିପରେ ଭୋଟ କ୍ରୟ ଦ୍ୱାରା କ୍ଷମତା ପ୍ରାପ୍ତି ! ..... କ୍ଷମତାର ନୂତନ ମଦ ଓ ସାମ୍ରାଜ୍ୟବାଦୀ ଘୃଣିତ ନିଶା, ନିଶାସକ୍ତ ସେଇ ମଣିଷମାନେ କୁଆଡ଼େ ସମାଜର ଆଦର୍ଶ, ଇତିହାସର ସାମ୍ନା ଫର୍ଦ୍ଦ ସେଇମାନଙ୍କ ନାଁ'ର ତାଲିକାରେ ସମାପ୍ତ ।

ଆମର କୁଆଡ଼େ ଥିଲେ ଜଣେ ଗାନ୍ଧୀ, ଥିଲେ ରାଧାକ୍ରିଷ୍ଣନ୍ ଜଣେ !

ତୁମେ ଶୁଣିଚ, ଈଶ୍ୱର ତୁମପରି ଜଣେ ନାରୀ ! ତାଙ୍କୁ କେହି କୁଆଡ଼େ ଆଲିଙ୍ଗନ ନାହାନ୍ତି କରି ? ନନ୍‌ମାନେ କ୍ୟାନସର ରୋଗୀ ! ଜରାୟୁ କ୍ୟାନସର, କାରଣ ସେମାନଙ୍କ ଅମୈଥୁନ ! ମାର୍ଜାରୀମାନେ ସର୍ବଦା ଖୋଜନ୍ତି ସହବାସ ଏବଂ ସର୍ବଦା ସହବାସରତ ହେତୁ ପ୍ରସବ କରନ୍ତି ଶିଶୁ ଏକାଧିକ ! ମଣିଷ ଈଶ୍ୱରଙ୍କ ପୁତ୍ର । ପ୍ରତି ସେକେଣ୍ଡରେ ଜନ୍ମ ନିଅନ୍ତି ପଞ୍ଚସ୍ତରି ଗୋଟି ଶିଶୁ, ତାଙ୍କରି ଠାରୁ ଟି ?

ମୁକ୍ତ ପ୍ରେମ ପ୍ରସଙ୍ଗକୁ ଲୋକେ କରନ୍ତି ଘୃଣା । ବଖରାର ଅବରୁଦ୍ଧ ଅନ୍ଧକାରରେ ସେମାନେ ଯେଉଁ ଘୃଣାକୁ ପଣା କରି ପିଅନ୍ତି ତାହା କ'ଣ ମାନବିକତା ? କାମୋପ୍ରନ୍ନବାଦ

(ଇରୋଟିସିଜିମ୍) ଇତିହାସର ଏକ ଦୃଷ୍ଟି । ଏହା ସାମ୍ନାକରିବାକୁ ମନା କରିବା ଅର୍ଥ ବାରୋମିଟରରେ ଭବିଷ୍ୟତ ପାଗ ସୂଚନାକୁ ସାମ୍ନା କରିବା ଭୟ ! କାମୋତ୍ପନ୍ନ ଉପାଦାନ ଅତ୍ୟାଧୁନିକ ସାହିତ୍ୟର ସ୍ୱଭାବଜ ଅଙ୍ଗ ! ମଣିଷଠୁ ଅବିଛେଦ୍ୟ; ସମୟର ଦାନ । ଯାହାକୁ ପ୍ରତ୍ୟାଖ୍ୟାନ କରିପାରି ନାହାନ୍ତି କବି ଭାଲେରି ଓ ର୍ୟାମ୍ବୋ; ଗଦ୍ୟ ଶିଳ୍ପୀ ଲରେନ୍ସ ଏବଂ ଜଏସ୍। ଚିତ୍ର ଶିଳ୍ପୀ ଗୋଗୁଇଁ ଓ ଭାନ୍‌ଗୋଘ୍ ।.... ବାରୋମିଟରକୁ ନ ଅନାଇଲେ ଝଡ଼ ବଦଳାଇ ଦେବ ତା ଦିଗ ? ଜୟନ୍ତୀ, ତୁମେ ଜାଣିଚ ପୁରୁଷମାନେ କାହିଁକି ଏତେ କୁତ୍ସିତ ? କାରଣ ନାରୀମାନେ ଅତ୍ୟନ୍ତ ରୁଚିରା ବୋଲିତ; ସେମାନଙ୍କ ସୁଶୀଳ ଓ ସୌନ୍ଦର୍ଯ୍ୟ ଲାଗି ।

ପ୍ରାର୍ଥନା ଓ ମୈଥୁନ ଦୁଇଟିଯାକ ମୋ ପାଇଁ ସମାନ । ଏକ ପ୍ରକାର କର୍ମ !

ଜୟନ୍ତୀ ! ଶାଢ଼ୀଟିକୁ ତୁମେ ଏମିତି ପିନ୍ଧ ଯେ ଛପି ଯାଏ ତୁମ ଯୌବନର ଜୟସ୍ତମ୍ଭ ! ବସନ ଭାଙ୍ଗର ଆସ୍ତରଣ ଛପାଇ ଦିଏ ଦୁଲ୍‌ଦୁଲ୍ ଉଡ଼ନ୍ତା ମେଘ ! ନିଜର ଶ୍ରେଷ୍ଠ ସୌନ୍ଦର୍ଯ୍ୟକୁ ଲୁଚାଇ ତୁମର ଲାଭ କ'ଣ ? ଅବଚେତନରେ ଏହା ନାରୀ ସତୀ ସଂବିତ୍‌ର କାମ ? ନା ହେବନି କା' ଦୃଷ୍ଟି ଦୋଷ କ୍ଷୁଣ ? ଦେଖିଚ ଗ୍ରୀକ୍ ମୂର୍ତ୍ତି ଯୌବନର ଦେବୀ ଭେନସ୍‌ଙ୍କ ସ୍ତନ ? ଛୋଟଛୋଟ । ମୁଠାମୁଠା କି ମିଠାମିଠା ତୁମ ସ୍ତନ ଭେନସ୍‌କୁ ଟପି ଯାଇଛି, ଜୟନ୍ତୀ । ସେ ହଳକ ଅକ୍ତିଆର ନିଶାରେ ମୁଁ ଏବେ ନିଜଠୁ ନିଜେ ଖାପଛଡ଼ା !

ଅଲରା ଓ ଅଜଣା ।

ପୁରୁଷର କାମନା !

ଔପନ୍ୟାସିକ ଫ୍ଲବର୍ଟ ଜୀବନରେ ପ୍ରଥମ ଥର ପାଇଁ ଯେଉଁ ଦିନ ଦେଖିଲେ ହଳେ ମୁକ୍ତ ବକ୍ଷୋଜ, ହୋଇଗଲେ ସଂଜ୍ଞାହୀନ ! ଭିକ୍ଟୋର ହ୍ୟୁଗୋ ଚିତ୍କାର କରିଉଠିଥିଲେ- ଇସ୍ କି ଭୟାନକ ! ହଳେ ରାକ୍ଷସ ?...

ସହବାସ ସ୍ୱଚ୍ଛ କରିଦିଏ ନାରୀର ଦୃଷ୍ଟି !

ନିର୍ମଳ ହୋଇଯାଏ ତା' ଅନୁଭୂତିର ବାସନ !

ଅଙ୍ଗରେ ତା' ଚହଟି ଆସେ କିନ୍ନରୀର ଲାବଣ୍ୟ !

ତୁମକୁ ମୁଁ ଲାବଣ୍ୟବତୀ କରି ଦେଉଛି, ଜୟନ୍ତୀ ! ଏ ଟ୍ରେନ୍‌ଟା ମୋ ଗୋଟାଏ କୁତ୍ସିତ ବୋଇତ । କୁମାରୀକାରୁ ପାରି ହେଉଛି ସିଂହଳକୁ ସମୁଦ୍ର ।

ପ୍ରିୟତମା, ତୁମେ ମୋର ନୂତନ ଜେରୁଜେଲମ୍; ଯାହାକୁ ଜାଣେ ନାହିଁ ବାଇବେଲ ! ବାଇବେଲ ଜାଣିଛି ଖାଲି ମୁଗ୍ ଦାଲିନୀ ଓ ଦୋଲିଲାକୁ ! ବରଂ ତୁମ ନାଁ ମୁଁ ଦେଇପାରେ 'ଅବିଷ୍ୟା'; ଯାହାକୁ ଅଣାଯାଇଥିଲା ଡାଭିଡ୍‌ର ମୃତ୍ୟୁ ବେଳେ ତାକୁ ଉଷୁମ୍ କରିବାକୁ; ଉତ୍ତେଜିତ କରେଇ ଦେବାକୁ ତା' ଦେହର ଶୀତଳ ମାଂସକୁ !

ତୁମେ ସେଇପକ୍ଷୀ, ତୁମକୁ ପବିତ୍ର ଅଯୋଧ୍ୟା ବୋଲି ମୁଁ ନାଁ ଦେଇଛି; ଯାହା ବକ୍ଷରେ ବାବ୍ରୀ ମସ୍‌ଜିଦ୍‌ପରି ଚିକ୍‌କଣ ହଳେ ସୁନ୍ଦର ଗମ୍ବୁଜ ବସିଛି ! ଧର୍ମ ଓ କଳାର ମିଳିତ ସ୍ଥାପତ୍ୟ ଶାଢ଼ୀଟପି ଫୁଟି ଉଠୁଚି !!

ଜୟନ୍ତୀ, ତୁମର କି ନିରୀହ ମୂର୍ତ୍ତି; ଯେମିତି ଏକ କପୋତୀ ! ତୁମ ନୀରବତା ମୋ ଭିତରେ ଜାଗ୍ରତ କରେ ଥଳକୂଳ ହୀନ ଉତ୍କଣ୍ଠା ! ତୁମ ଆଳାପ ? ମତେ କରିପାରେ ନାହିଁ ସଂପୂର୍ଣ୍ଣ ସନ୍ତୁଷ୍ଟ !

ସେଇଥି ପାଇଁ ଲେଖିଲି ଚିଠି !...

ଜୟନ୍ତୀ, ଓଠ ଖୋଲ ! ବଂଦ ରଖିଲେ ବି ମୋ ଓଠର ଉତପ୍ତତା ଆତ୍ମବିସ୍ମୃତିଜନକ ଗୋଟିଏ ଚୁମାରେ ଚୋଷି ନେବ; ତା'ଫାଙ୍କ ଭର୍ତ୍ତି କରିଦେବ ତୁମ ଓଠର ଲୋହିତତା ! ତୁମେ କିଛି ନ କହିପାରିଲେ ବି ରଚିହୋଇ ଯିବ ଅଲେଖା ସହସ୍ର କବିତା ! ତୁମର କବିତା ଲେଖାରେ ଆଣିଦେବ ଘନ ସାର୍ଥକତା !

ଗୋଟିଏ ଶୁଭ ବେଳ; ଅତିକ୍ରମି ଯାଉଛି ଏକ ଆଧ୍ୟାତ୍ମିକ ସମୟ ! ଯେତେବେଳେ ବ୍ୟକ୍ତି ଖୋଜେ ସୁଖର ପୁଷ୍ପ ! ହୃଦୟ ପାଇଁ ଆବଶ୍ୟକ ଥାଏ ଅତି ନିବିଡ଼ତମ ଓ ଉତ୍କଣ୍ଠାପୂର୍ଣ୍ଣ ଚେନାଏ ଭଲପାଇବା ! ମୋ ମନପକ୍ଷୀ ଏବେ ସେଇ ପ୍ରେମର ଶାଖାଟି ପାଇଁକି ଅସ୍ଥିର ହେଉଛି । ସ୍ଥିର ସଂଲଗ୍ନ ନିତାନ୍ତ ଦୁଷ୍ଟ ଭାବାବେଗୀୟ ଅଭ୍ୟାସ; ମୁଁ ପରିତୃପ୍ତ ?

ଏହା ମତେ କରି ଦେଉଛି ପ୍ରବଳ ବେଆଡ଼ା ! ମୁଁ ତୁମର କ୍ରୀତଦାସ ନ ହୋଇଥିଲେ ବି ଅଜେୟ ଆନ୍ଦୋଳନ ଅଧିକୃତ କରି ନେଇଛି ମୋ' ମନ ! ମୋ ହୃଦୟକୁ ! କାହିଁକି ହେଲା ଏମିତି ?

କାରଣ -ମୁଁ ନିଜକୁ ଦେଇପାରି ନଥିଲି କିଛି ପ୍ରାଇଜ୍, କରିପାରିନଥିଲି ସଂତୁଷ୍ଟ ? ନାଁ ସାଧାରଣତଃ ଜୟନ୍ତୀ ପରି ଗୋଟିଏ ଭଲ ଚରିତ୍ରର ଝିଅକୁ ପୂର୍ବରୁ ମୁଁ ଭେଟିନଥିଲି ?

ଯେଉଁମାନଙ୍କୁ ଭେଟିଚି ଦୃଢ଼ ମନ ଦେଇ ଭଲ ପାଇଛି; ସେମାନଙ୍କୁ କରିପାରିନଥିଲି ଅଧିକାର ? ଭିନ୍ନ ରକମର ହେଲେ ବି ସେଇ ବିଚ୍ୟୁତି ଓ ବିଚ୍ଛେଦ ତୃଷ୍ଣା ମୋ ଭିତରେ ତା' କକ୍ଷଚ୍ୟୁତି ଆରମ୍ଭ କରିଛି ! ତେଣୁ ମୁଁ ଏତେ ନିବିଡ଼ ଭାବେ ଜୟନ୍ତୀକୁ ଚାହୁଁଚି ? ତା' ଗାଁର ଉପତ୍ୟକାକୁ ମୋ ଯାତ୍ରା ଆରମ୍ଭ କରିଛି ।

ପ୍ରଣୟ ଏକ ବାହ୍ୟ ସାମାନ୍ୟ ପଦାର୍ଥ ? ପୁରୁଷ ଏତେ ବିନୀତ ଓ ବିନୟ ଭାବରେ ମାଗୁଛି ଯେ ଜଣେ ଝିଅ ରାଣୀପରି କାହିଁକି ନିଜକୁ ନ ଦେଇ ଦେବ ଦାନ ତାକୁ ? ପ୍ରେମିକା ସବୁବେଳେ ରାଣୀ ! ଯୁକ୍ତି ଓ ଆଲୋଚନା ଗୌଣ ଏଠି ! ପ୍ରଣୟ ସଂପର୍କ ଏକ ପ୍ରକାର ପ୍ରିମିଟିଭ୍ ରିଭର୍ସନ୍ ମାତ୍ର ! ... ମୁଁ ଏଥର ଆଖି ଖୋଲିବି ? ଏଥର ମୁଁ କର ଲେଉଟେଇଲି !

ମୋ ସାମ୍ନା ସିଟ୍‌ରେ କେହି ଦୁଇଜଣ ବସି ବାଦାମ ଖାଇଲେଣି ! ଝରକା ପାଖ ଗୋଟିକିଆ ସିଟ୍ ଦୁଇଟିରେ ମଧ୍ୟ ବସିଗଲେଣି ! ମୁଁ ଶୁଣି ପାରୁଛି ସେମାନଙ୍କ ଆଳାପ ! ଯୁକ୍ତିତର୍କ, ତେର ଦଳିଆ ଶାସନ ଓ ଗୋଟାଏ ନୂଆ ସଙ୍କଟକୁ ବିକି ଦିଆଯାଉଛି ବୋଲି ଦେଶଟାକୁ; - ସେମାନଙ୍କ ମତ ! ପୁଣି ମୋ କାନ ଦୁଇଟା ଫେରି ଆସୁଚି, ଶୁଣୁଚି ଖାଲି ତୁମରି କଥା...! ଶବ୍ଦ ନିୟନ୍ତ୍ରିତ ରୁମ୍‌ର କାଚ ବଖରା ଭିତରୁ ରେକର୍ଡ଼ିଂ ରୁମ୍‌କୁ ବିଦ୍ୟୁତ୍ ତାରରେ ବୋହି ଆସୁଥିବା କବିତା ! ତୁମ ସ୍ୱରର ପଇଡ଼ ପାଣି ! ଶୀତଳ କରି ପକାଏ ମୋ ସ୍ନାୟୁର ସାହିତ୍ୟ ! ଗୁମ୍‌ସୁମ୍ ଉଷ୍ମତା ଚହଟି ଆସେ ସାରା ଉପତ୍ୟକା ! ତୁମ ଭିତରେ ପୁଣି ସାଇତା ଥିଲା ଏତେ ପ୍ରତିଭା ?

ତୁମକୁ ଆଲିଙ୍ଗନ କରିବାକୁ ମୋର ଇଚ୍ଛା ହେଉଛି !

ଗୋଟାଏ ବହିର ଆରମ୍ଭ ପରି ଯଦି ମୁଁ ତୁମକୁ ମୋ କୋଳ ଭିତରେ ପାଏ ! ଜୟନ୍ତୀ, ତୁମକୁ ମୁଁ ସବୁ ଦେଇ ପାରିବି, ଖାଲି ଦୁଃଖକୁ ଛାଡ଼ି ! ତୁମେ ମତେ ମାଗ ଏକ ବିରଳ ବ୍ୟତିକ୍ରମ; ତାହା ତୁମ ଠିକଣାରେ ପହଂଚିବ !

କାରଣ - ମୁଁ ତୁମରି ! ସବୁ ଅନ୍ତର୍ଦ୍ୱନ୍ଦ୍ୱ, ସ୍ୱବିରୋଧ ଓ ପାପପୁଣ୍ୟ ଉର୍ଦ୍ଧ୍ୱ ଜର୍ଜ କୋସିନସ୍କୀଙ୍କ ମୁଁ ବି ଚେଂପ୍‌ଗେଡ୍ ବାର୍ଡ଼; ତଥ୍ୟ ଓ ଯୌନତା ପ୍ରଧାନ ନନ୍‌ଫିକ୍‌ସନ୍ ! ମତେ ତୁମେ ପଢ଼ ! ମୁଁ ଏଲିସ୍‌ଙ୍କ ଉଭଟ 'ଇନ୍‌ଭିଜିବୁଲ୍ ମ୍ୟାନ୍', ଏକ ଅନ୍‌ଷଟପେବ୍ଲ୍ ଭଏସ୍ ! ଯାଅ, ସମୟକୁ କହିବ ତୁମକୁ ଭଲପାଏ ଜଣେ ମଣିଷ ! ସିଏ ମୁଁ !



# ଚିନ୍ମୟ ଅଦ୍ୱୈତ

ଜୟନ୍ତୀ, ଅକଳୁଷିତ ଜାଇତ୍ରୀ କେଉଁ ଭଦ୍ର, ଉଦାର ଓ କିନ୍ନରୀ କଂଠୀର ଗୀତିମୟ ଅଙ୍ଗ ? କାହାପାଖୁଡ଼ାକୁ ଦୀପ୍ତିମାନ କରିନାହିଁ ଅୟସ୍କାନ୍ତ ଶ୍ଳୈଷ୍ମିକ ? କଂଚିମାଳା କଥା ଜାଣିଚ ? କଂଚିମାଳା ନାରୀ ନୁହେଁ ଏକ ନୀଳ ଲୋହିତ ! ସିଏ ଜାଣେ ନାହିଁ ଉପକଂଠ କିମ୍ବା ନା'ବାଳକତ୍ୱ । ସିଏ ଜାଣେ - ଉଦ୍ଦେଶ୍ୟ ଗୁଣଯୁକ୍ତ ହେଲେ ହୁଏ ବିଷୟ ନିବୃତ୍ତି ଓ ବିଷୟ ନିବୃତ୍ତିରୁ ଘଟେ ଈଶ୍ୱରଙ୍କଠାରେ ରତି । ସେଇଥି ପାଇଁ ପକ୍ଷୀଡ଼େଣାରେ ଏତେ ପରଭର୍ତ୍ତି ।

ସୁନାଫାଶରେ ଗହମ ରଙ୍ଗର ପକ୍ଷୀ ମନ୍ତ୍ରମୁଗ୍ଧ ହୋଇ ନିଜକୁ ବିଦୀର୍ଣ୍ଣ କରୁଛି !

ଯେମିତି ବୟସ ବଢ଼ିବା ଅର୍ଥ ମଣିଷ ବଡ଼ ହୁଏ ନାହିଁ, ହୁଏ ବୁଢ଼ା ! ସଂସାର ଅଧିକାର କରିବା ସମୟ ତା' ଆସେ କମି ଓ ତା' ବଂଚିବା ଅଧିକାର ଚାଲେ ଖସିଖସି ! ପାଖ ହୁଏ ମୃତ୍ୟୁର ଜଙ୍କସନ୍ ! ତା' ଲୋଭନୀୟ ଦେହ ସ୍ୱତଃ ପ୍ରବୃତ୍ତ ହେଉଥାଏ ଲୁଣ୍ଠିତ ଓ ବିକୀର୍ଣ୍ଣ ! ଠିକ୍ ସେମିତି ତାକୁ ଫୁର୍ତ୍ତି ଯୁକ୍ତ ବିନାସ୍ୱତ୍ୱରେ ଦଖଲକାର କରି ଦେଉଛି ସିଠାହୀନ ! ସ୍ୱତଃ ପ୍ରବୃତ୍ତ ଲୁଣ୍ଠିତ କରି କରି ଦେଉଛି ପ୍ରବହଣ ରହିତ !

ଝରଣା ଯଦି ନ ବୋହିବ ସିଏ ଦୂଷିତା ନ ହୋଇ କ'ଣ ହେବ ?

ନାରୀ ମାତ୍ରେ ହିଁ ଫୁଟିଲା ପୁଷ୍ପ ! ଫୁଟା ପୁଷ୍ପ ନିଜକୁ ଏକ୍ସହିବିଟ୍ କରିବ ହିଁ କରିବ ! ନିଜ ମହନୀୟ ଇଲାକାକୁ ଦେଖାଇ ହେବା ପ୍ରବୃତ୍ତି ନାରୀର ସହଜାତ ! ହେଉବରଂ ସେଇଟା ତା' ସ୍ୱାମୀ ଓ ସନ୍ତାନଙ୍କ ସଂପତ୍ତି; ନିଜର ପାଳିଲା ପୋଷିଲା ଦିହ ତ !

କଳା କଳ୍ପନାମୟ କମନୀୟ ନାରୀଅଙ୍ଗ କ'ଣ ଖାଲି ସୀମାବଦ୍ଧ ସହବାସ ପାଇଁ ସୃଷ୍ଟି ? ସହବାସରେ ସଂପୂର୍ଣ୍ଣ ଅନ୍ଧ କଂଚିମାଳାର ପ୍ରବୃତ୍ତି ! ମାର୍ଜାରୀ ତା' ଭାବନାର ଚିଠିକୁ ରୁଚି ଓ କ୍ଷୁଧାର ଭିଡ଼ରେ ହଜେଇ ଦେଇଛି । ଘନ ସନ୍ନିବିଷ୍ଟ ସରଘରେ ପୃଷ୍ଠହୀନ ବଣାବାଟକୁ ଅବାଧ୍ୟବାୟୁ ପ୍ରବାହୋଂପଯୋଗୀ ଆକାର ବିଶିଷ୍ଟ କରିଛି ! ତା ଆବଦ୍ଧକାରୀ ଗୁପ୍ତ କୌଶଳ ଦାରୁଣ ପ୍ରହାର ବିହ୍ୱଳ ହଲେ ଝରକାର କବାଟପରି ଫିଟିଯାଉଛି ! ଯେମିତି ସିଏ ବଂଧା କାମନା ପାଇଁ ଫିଟାଇ ଦିଏ ଶୂକରଶାଳାର ଆବୃତ୍ତ ପ୍ୟାଣ୍ଟି ଓ ଶାଲଓ୍ୱାର !

ଭଣ୍ଡାରିର ଚଟପଟି ପଲସ୍ତରା ଉପରେ ପରାଭବ ବିସ୍ତାରେ !

ଜିଦ୍‌ଖୋର ଉଦ୍ଦେଶ୍ୟ ଶୁଷ୍କପତ୍ର ପରି ଶାଖାରୁ ବୁଂଦାବୁଂଦା ଖସେ ! ଚରମ ପରାଜୟ ଆଦରି ନିଏ ନିଜ ମହକୁମା ! ଚାତୁର୍ଯ୍ୟମୟ ନିଜ ସଜଡ଼ା କପଟଫଂଦୀ ପ୍ରକୃତରେ କ'ଣ ଦିଏ ପ୍ରଚୁର ଜୀବନ ? ଜୀବନ ମିଳେ ଅଜୟ ବଂଧା କାମନାକୁ ? କଂଚିମାଳା ପାଏ ଜୀବନ ? ପଲ୍ଲବିତ ହୁଏ ଲକ୍ଷ୍ୟର ପାବନ ? ତୃପ୍ତିଜନକ ପ୍ରତ୍ୟୟ ସ୍ଥାନାଭାବର ସିଦ୍ଧ ବିପର୍ଯ୍ୟୟ ଆଖିକୁ ଦିଶେ ନାହିଁ; ଯେଣୁ କଂଚିମାଳା ଅଂଧୁଣୀ ! ତା'ପ୍ରଣୟପ୍ରାର୍ଥୀ ଗୋଟାଏ ସାରାଂଶ ସୂଚନା ତ ନୁହେଁ, ଗୋଟାଏ ଦାଗ ଲଗା ପ୍ରଶ୍ନ ! ସେକଥା ଭୋକିଲା ନାରୀ କେମିତି ଜାଣିବ ?

ବେଞ୍ଚ ଉପରେ ପୁଣି ମୁଁ ପରିବର୍ତ୍ତନ କଲି ପାର୍ଶ୍ୱ । ଗପୁଥିବା ଲୋକ ଦୁଇଟିଙ୍କ ନେଲି ଫଟୋ ! ଜଣେ ବୟସ ଷାଠିଏ ଟପି ଗଲାଣି; କୃଷ୍ଣ ମୂର୍ତ୍ତିଙ୍କପରି ଲୋକଟି ଜିନ୍ ପିନ୍ଧିଛି ! ଆଣ୍ଠୁ ତଳକୁ 'ଆଇ ଲଭ୍ ୟୁ'ର ଗୋଟାଏ ନାଲି ପ୍ୟାଚ୍ ପଡ଼ିଛି । ଆଖିରେ ଗଗଲ୍‌ସ; ଛୋଟ ଛୋଟ କାଚ ଡ଼ୋଳାକୁ କରିଛି ଆଢୁଆଳ ! ନାକ ତଳେ ନାହିଁ ନିଶ; ଯେମିତି ଜଣେ ଗେ-ବୟେ ! ଲୋକଟି ପାଖକୁ ଲାଗି ବସିଛି ବୟସ ଚାଳିଶ ପାଖାପାଖି ଏଡ୍‌ଓ୍ୱାର୍ଡ଼ କୋଲିନ୍; ଆଣ୍ଡେରସନଙ୍କ ପ୍ରିୟବଂଧୁ ! ପ୍ୟାଣ୍ଟଟା ଜିନ୍ ସାର୍ଟଟା ହାଓ୍ୱାଇ ! ତାକୁ ଆଣ୍ଡେରସନ୍ ଡାକୁଛନ୍ତି ଏ' ବୋଲି !

ଚହଚହ ହସି ସେମାନେ ଗପୁଛନ୍ତି ଚଳିତ ସପ୍ତାହର ସୁପରହିଟ୍ ! ଉର୍ମିଳାର ଲେଗ୍‌ପିସ୍, ମାଧୁରୀ ଦୀକ୍ଷିତ୍ ହସର ଚିକ୍‌ଚିକ୍ ଓ ମନୀଷା କୋଇରାଲାର ସ୍ତନ ଦୁଇଟି... ବୁଢ଼ା ହୋସେନ ପ୍ରକୃତରେ ରସିକ; ଷଣ୍ଢ ହୋଇ ଶେଷରେ ମାଧୁରୀକୁ... ଡ଼ଷ୍ଟୟିଉସ୍କି ଲେଖା ଗୋଟିଏ ଆଠବର୍ଷର କଅଁଳା ବାଳୁରୀକୁ.... ପାପ ନ କଲେ କେହି ମହାପୁରୁଷ ହୁଏନି !

ପାପର ପେଡ଼ି ଭିତରେ ଶୋଇ ଥାଏ ସୁଖର ସାପ ! ପାପ କଲେ ହିଁ ମିଳେ ପ୍ରଚୁର ସୁଖ !

ଏଡ଼ୱାର୍ଡ଼୍‌କୁ ପାପରେ ମତେଇ ଦେଲେ ଆଣ୍ଡେରସନ୍ ?

ଏଡ଼ୱାର୍ଡ଼୍, ଗ୍ରେଗୋରିପରି ତମେ ଗୋଟାଏ ଅସରପା ହୋଇ ଯାଇଛ ? ତମର ଲିଙ୍ଗ ନାହିଁ ! (ଗୋରା ଟୋକାଗୁଡ଼ାଙ୍କର କ'ଣ ଲିଙ୍ଗ ଥାଏ ?) ମୋ ଢେଙ୍କବାପା କାଫ୍‌କା କହନ୍ତି ! ମୋ ମାଈଁ ଭର୍ଜିନା ଉଲ୍‌ଫ 'ଅରଲ୍ୟାଣ୍ଡ' ଦେହଟାରୁ ବଦଳାଇ ଦେଇଛି ସେକ୍ସ ! ଗୋଟିଏ ଦେହରେସ୍ତ୍ରୀ ଓ ପୁରୁଷାଙ୍ଗର ଦ୍ୱୈତ ଅନୁଭୂତି ! ସ୍ୱାଦିଷ୍ଟ ଲାଗୁଚି ?

'ଗ୍ରେଗୋରି ୟେଫିମୋଭିଚ ରସପୁଟିନ' କଥା ଏଡ଼ୱାର୍ଡ଼୍ ତମେ ଭାବୁଚ କି ? ଆରେ ନା, ନା; ସେ ଲୋକଟା ଥିଲା ବିଶ୍ୱର ଅବ୍‌ନର୍ମାଲ ସୃଷ୍ଟି ! ଗୋଟାଏ ଭେଲଭେଟ୍ ବାକ୍ସରେ ସାଇତି ଥିଲା ଢଣେ ଯୁବତୀ; କଟା ଆକାଶର ଦୈର୍ଘ୍ୟ ବି ହୋଇପାରେ ଇମିତି ? କ'ଣ ପଢୁଚି ଏଡ଼ୱାର୍ଡ଼୍; ଆଣ୍ଡେରସନ୍‌ଙ୍କ ଗପ ? ଗୋଟିଏ ଶତାବ୍ଦୀ ତଳେ ଲିଖିତ ଏ ଗପ ରୋବର୍ଟ ଓ ସାଟେଲାଇଟ ସମୟର କ୍ଲାସିକ୍ ? ମତେ ହସ ମାଡୁଚି ! ମୁଁ ଠୋ ଠୋ ହସିବି ? ମୁଁ ହସିଲେ ମତେ ସେମାନେ ପାଗଳ ଭାବିବେ ? ଖବର କାଗଜକୁ ବିବୃତି ଦେବେ; ମୋ ହସ କାମୁଡ଼ି ପକାଇଲା ସେମାନଙ୍କ ମୁହଁ ହାତ ଓ ମାଂସ ! ସେଗୁଡ଼ା କ'ଣ କାକୁଡ଼ି ନା'କୁଚ ?

...'କାହାକୁ କହନ୍ତି ସାହିତ୍ୟ ? କାହାକୁ ?'

ଏଡ଼ୱାର୍ଡ଼୍ ଖବର କାଗଜର ଗୁମାସ୍ତାଟିଏ ପରି ଅନାଇଚି ।

ଝରକା ପାଖ ଗୋଟିକିଆ ସିଟ୍‌ରୁ କଂଚିମାଳା ପାପୁଲି ଥୋଇ ଦେଖାଇ ଦେଲା ନିଜର ପଟେ ସ୍ୱର୍ଦ୍ଧିତ ପୃଥୁଳ ସ୍ତନକୁ ।

ତା' ସାମ୍ନା ସିଟ୍‌ରେ ବସିଛନ୍ତି ଭଞ୍ଜୀ ! ଓଠ ତଳେ ଫ୍ରେଂଚ୍ ଦାଢ଼ି, ମୁଣ୍ଡରେ ଗୋଟାଏ କ୍ୟାପ୍, ଅଚ୍ଛ ଟେରା ଲୋକଟି ! ରହି ରହି ସିଗାରେଟରୁ ଧୂଆଁ ଶୋଷୁଛି ! ତା' ଦୃଷ୍ଟି କେତେବେଳେ କଂଚିମାଳା ଉପରେ ତ କେତେବେଳେ ଝରକା ବାହାରେ ! ଲୋକଟି ବ୍ୟାକରଣ ସୂତ୍ର ଘୋଷୁଛି ?

କଂଚିମାଳା, ଆଣ୍ଡେରସନ୍, ଏଡ଼ୱାର୍ଡ଼୍ ଓ ଭଞ୍ଜୀ ଏମାନେ କେହି ମହତ ମଣିଷ ନୁହନ୍ତି ! ଖରାପକୁ ଖରାପ ବୋଲି କହିଦେବା ସହାସ କେତେ ଜଣଙ୍କ ପାଖରେ ଅଛି ? ଏଣୁ

ଏମାନଙ୍କୁ ମୁଁ ଚିହ୍ନାଇ ଦେଲି - ଏମାନେ ଭାରି ନାମୀ ! ଦୟାକରି କରାଉଛି ଏମାନଙ୍କୁ ମୋ କଲମରେ ମହତ ପ୍ରାପ୍ତି ! ମୁଣ୍ଡୟଙ୍କୁ ସଂଜ୍ଞାବିତ କରାଉଛି କାଉଁରୀ କାମଚଣ୍ଡୀ ମନ୍ତ୍ରରେ ମୁଁ 'ଭୁଷୁକପାଦ ଯୋଗୀ' ! ଏହାଥିଲା ଭଙ୍ଗୀଙ୍କ ସ୍ୱଗତୋକ୍ତି ? ଓଠତ ହଲୁଛି ! ଆଣ୍ଡେରସନ୍ ଦେଖୁଛନ୍ତି ନିଜର ଅତିପ୍ରିୟ ଏ'ର ପାପୁଲି ! ଭଙ୍ଗୀ ଭୃଗୁ ସଂହିତାରୁ କଂଚିମାଳାକୁ କହୁଛନ୍ତି ତା ପଛଜନ୍ମ କଥା ! କଂଚିମାଳା ରୋମ ଟାଙ୍କୁରି ଉଠିଲା ! ଦୂରଦର୍ଶନର 'ଜୟବୀର ହନୁମାନ' ନା' ଅଲିଫ୍ ଲୟିଲା' ?

...୧୮୧୨ ମସିହା ଇଂଲଣ୍ଡ; କଂଚିମାଳା ହୋଇଥିଲା ଜନ୍ମ ! ତା ନାଁ ଥିଲା କାରୋଲିନୀ ଲାମ୍ବ ! ବୟସ ସତେଇଶ ! ଉଇଲିୟମ ଲାମ୍ବ ଯିଏ ପରେ ହୋଇଥିଲେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ; ତାଙ୍କରି ଯୁବତୀ ପତ୍ନୀ !

ଗୋଟିଏ ଚହଳପକା ବହିର କବି ଲର୍ଡ୍‌ବାଇରନ୍; ବୟସ ଚବିଶ ! କାରୋଲିନୀଙ୍କ ସହିତ ହେଲା ତାଙ୍କ ସାକ୍ଷାତ । ନିଜ ପତ୍ରିକାରେ ପ୍ରଥମ ଦେଖାର ଅନୁଭୂତି ଛାପିଥିଲେ ଯୁବତୀ ଲାମ୍ବ; ବାଇରନ୍ ଥିଲେ ମ୍ୟାଡ୍ , ବ୍ୟାଡ୍ ଏଣ୍ଡ ଡେଂଜରିଅସ୍ ଟୁ ନୋ ! ତାଙ୍କ ମନ୍ତବ୍ୟ !

ପତଳୀ ଅଙ୍ଗଲତା, ବାଳକପରି ଆକୃତି, କଷି ମୁହଁଟି ମୟୂରୀପରି ନାଚିଲା ବାଇରନଙ୍କ ସାରାସ୍ମୃତି ଓ ଘୋଟି ଆସିଲା ପ୍ରବଳ ଆକାଂକ୍ଷାର ବର୍ଷାଋତୁ ! ମଧୁମକ୍ଷୀ କେତେବେଳେ ନୁହେଁ କୁସୁମର କିଙ୍କର ? କାରୋଲିନୀ ବି ଥିଲା ଏକ୍ସହିବିସିନିଷ୍ଟ ପ୍ରବଳ ! ଖୁବ୍ ଚଂଚଳ ଖୋଲି ପଢ଼ାଇ ଦେଲା ବାଇରନଙ୍କୁ ତା' ଦେହର ଗଜଲ ! 'କାରୋ' ୟୁନିକ୍ ସେକ୍ସ ପାର୍ଟନର୍ ! ମନ୍ତ୍ରମୟୀ ଭୂଗୋଳ ! ସଂପର୍କର ଅଠାଟା ହେଲା କି ନିବିଡ଼ !

ଦିନେ ବାଇରନ୍ ପାଇଲେ ଖଣ୍ଡେ ଦୀର୍ଘ ଚିଠି । ଗୋଲାପୀ ଲଫାପା, ନୀଳକାଳିରେ କାରୋଲିନୀ ଲେଖିଚି ! ଚିଠିଟି ସହିତ ଏକ ଗୁଚ୍ଛ କୃଷ୍ଣକେଶ ଉପହାର ତା' ଭିତରେ ଆସିଛି !

''ଏଗୁଡ଼ିକ କାଟି ମୁଁ ଗୋଟିଏ ଅନ୍ତରଙ୍ଗ ସ୍ଥାନରୁ ଉପହାର ଦେଉଛି; ତୁମଠୁ ସେଇଭଳି ଘନିଷ୍ଠ ଉପହାର କିଛି ପହଂଚିବ ବୋଲି ଆଶାରଖୁଛି ? ଇତି ।'' କାରୋଲିନୀ ଲେଖିଚି !

କୋଲଗ୍ରେ ସହର ମେୟରଙ୍କ ପତ୍ନୀ ଜଣେ ଯୁବତୀ ନନ୍; ତା'ଯୌବନ ଶୈବାଳ କିଛି

ପ୍ରବଳ ଉତ୍କଣ୍ଠାରେ କାସାନୋଭା ସାଇତି ରଖୁଚି ! କାରୋଲିନୀ ତା'ପଛ ଜନ୍ମରେ ଥିଲା ସେଇ ନନ୍ ! ଏ ଜନ୍ମରେ କଂଚିମାଳା; ତୁମ ନାମ !

ଏ' ତୁମେ କବିତା ଲେଖୁଚ ? ଏହା ତୁମ ପ୍ରାରବ୍ଧ । ପଛ ଜନ୍ମରେ ତୁମେ ଥିଲ ବାଇରନ୍ କବି । ତା'ପଛ ଜନ୍ମରେ କାସାନୋଭା ଜିଓଭାନି ଜାକୋପୋ ! ଏ ଜନ୍ମରେ ଗୋଟେ କାମୁକ ନପୁଂସକ ! ବାମ ଅଙ୍ଗ ପଙ୍ଗୁ ତୁମ ବର୍ଣ୍ଣ ଇଷତ ପିଙ୍ଗଳ ! ତୁମ ସହ ସହବାସ କିମ୍ବା ଉପବାସ କଲେ ହେବ ଚକ୍ଷୁହୀନ, ଅଙ୍ଗହୀନ ଓ ହାନୀ ହେବ ଆୟୁଷ ଆମର ! ଓଃ କି ସାଂଘାତିକ ବିପଦ !

ଏଫ୍.ସ୍କଟ ଫିଟ୍‌ଜେରାଲ୍‌ଡ଼; ତାଙ୍କର ପ୍ରଥମ ଉପନ୍ୟାସ 'ଦି ସାଇଡ଼ ଅଫ୍ ଦି ପାରାଡ଼ାଇଜ୍' ଦ୍ୱିତୀୟ ବହି 'ଦି ଗ୍ରେଟ ଗେଟସ୍‌ବାୟ' ଓ ତୃତୀୟ ଉପନ୍ୟାସ 'ଟେଣ୍ଡର ଇଜ୍ ଦି ନାଇଟ !' କି ପ୍ରସିଦ୍ଧି ! ପତ୍ନୀ ଜିଲ୍‌ଦା କହିଲା ତୁମେ କାହାକୁ ସନ୍ତୁଷ୍ଟ କରିପାରିବନି ! ତୁମ ପ୍ରସିଦ୍ଧି ନୁହେଁ ହୁଇସ୍କି ! କି ଅସ୍ତବ୍ୟସ୍ତ ହେଉଥିଲା ଲୋକଟି !

ଦେହରେ ଯଦି ନ ଥାନ୍ତା ସେଇ ଅଂଶଟି !

ବିଲ୍ୱମଙ୍ଗଳ କବି ପାଇଁ ଚିନ୍ତାମଣି ଗଣିକାକୁ ଭେଟିବାକୁ ଏକମାତ୍ର ବାଟ ପ୍ରାଚୀର ପାର ହେବାକୁ ଓହଳି ଥିବା ରେଶମ ରଜ୍ଜୁଟି ! ବଡ଼ ଅସ୍ତବ୍ୟସ୍ତ କରୁଛି ଡ଼ି.ଏଚ୍.ଲରେନ୍ସଙ୍କ କବିତା 'ସ୍ନେକ' ? ରାଜାରାଓ ଲେଖିଛନ୍ତି 'ଦି ସର୍ପେଣ୍ଟ ଏଣ୍ଡ ରୋପ୍' ! ରଜ୍ଜୁ ବୋଧ ହେଉଛି ସର୍ପ ଓ ସାପ ବୋଧହୁଏ ଏକ ରଜ୍ଜୁ ! ଅଦ୍ୱୈତବାଦ ? ସୁଖ କ'ଣ ଜୟନ୍ତୀ ? ସ୍ମୃତି ଓ ଅତୀତ ଭିତରେ ଥାଏ କ'ଣ ତଫାତ୍ ? ଭବିଷ୍ୟତର ଠିକଣାଟା ଆଣ୍ଡେରସନ୍‌ଙ୍କୁ ଏ'ଦେଖାଇ ଦେଇଛି ? ଏତେ ନରମ; କି ଚିକ୍‌କଣ ! ପିଚାନୁହେଁ ଦୁଇ ମୁଣ୍ଡା ପାଉଁରୁଚି !

'ଭେନସ୍ ଡ଼ି ମିଲୋ' - ଭାନ୍‌ଗୋଘ୍ ଆଙ୍କିଛନ୍ତି !

ଜୟନ୍ତୀ ଗୋଟିଏ ଛାଣ୍ଟ୍ ଗଛ; ପାଚିଲା ଫଳ ଓ ଫୁଲରେ ମହକି ଉଠୁଚି ! ହୋସେନ୍‌ର 'ଦାମିନୀ' ଓ ସିଏ 'ଗଜଗାମିନୀ' ! ଦାଁ ଭିନ୍ସ ସେ ଛବିଟାକୁ ଆଙ୍କିପାରିବନି !

ଜୟନ୍ତୀ, ତୁମକୁ ମୁଁ କୋଳକୁ ନେବି ?

କୁଣ୍ଢେଇ ପକେଇବି ?

.... ଔପନ୍ୟାସିକଙ୍କ ପିତାମହ ଚାର୍ଲସ ଡିକେନ୍ସ, ତାଙ୍କ ପତ୍ନୀ କେଟି ଗୁହାର୍ଥ ! ଶାଳୀ ମେରୀ ! ନୁହେଁ ସୁନ୍ଦରୀ କିନ୍ତୁ ସାହିତ୍ୟ ରୁଚିଶୀଳା; ଭୋଗ ଓ ସଂଭୋଗର ଝରକା ଓ ଦ୍ୱାର ଦିନେ ଡିକେନ୍ସଙ୍କ ପାଇଁ ଖୋଲିଦେଲା ! ଗୋଟିଏ ପ୍ୟାଣ୍ଟର ଦୁଇଟି ପକେଟ; କେଟି ଓ ମେରୀ ସୁଖ ଦେବାରେ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ପରି ! ଥିଏଟରରୁ ଫେରି ବିଳମ୍ବିତ ରାତ୍ରିରେ ଶୋଇଛନ୍ତି ତିନି ହେଁ, ହଠାତ୍ ଡିକେନ୍ସଙ୍କ ନିଦ୍ରା ଗଲା ଭାଙ୍ଗି । ଅସ୍ଥିର ହେଉଛି ମେରୀ, ହାର୍ଟ ଚୋକ୍ !

ଡିକେନ୍ସଙ୍କ କୋଳ ଭିତରେ କଣ୍ଢେଇଟିଏ ଶୋଇଚି ! ଦୁଇ ବାହୁ ଭିତରେ ସାଇତିଛନ୍ତି; ହଠାତ୍ ଆଖିର ଦୀପ ଦୁଇଟି ସମୟର ପବନ ଫୁଙ୍କି ଲିଭାଇ ଦେଉଛି ! ଟପ୍‌ଟପ୍ ଦି ବୁନ୍ଦା ଅଶ୍ରୁ ମେରୀଙ୍କ ଶୀତଳ ମୁହଁର ଦର୍ପଣ ଉପରେ ଖସିପଡୁଛି ! ତା' ଆଙ୍ଗୁଠିରୁ ମୁଦିଟିଏ କାଢ଼ି ନିଜ ଆଙ୍ଗୁଠିରେ ପିନ୍ଧିଲେ ଡିକେନ୍ସ !

..... ପଇଁଚାଳିଶ ବର୍ଷ ବୟସ୍କ ଡିକେନ୍ସ; ତାଙ୍କ ବଡ଼ ଝିଅର ବୟସ ଅଠର ! ଅଠର ବର୍ଷିୟା ଅଭିନେତ୍ରୀ 'ନିଲୀ' ସହ ଆରମ୍ଭ ହେଲା ନୀଳ ନୀଳ ସାନ୍ନିଧ୍ୟ ! ସୁଖର ରଂଗ ଥିଲା କି ବାଇଗେଣୀ ! କେଟି ଭାରି ଈର୍ଷାକଲା ତାକୁ ଏବଂ ଡିକେନ୍ସଙ୍କଠୁ ଦୂରେଇ ନେଲା ନିଜକୁ ! ଅଥଚ ନେଟିଙ୍କ ଶେଷ କନିଷ୍ଠା ପଞ୍ଚଦଶ ବର୍ଷ ବୟସ୍କା ଜର୍ଜିନା ଭିଣୋଇଙ୍କ ଘରକୁ ଭ୍ରମଣରେ ଆସି ହୋଇଗଲା ତାଙ୍କ ମଇନା ! ପ୍ରଣୟ ପୁଷ୍ପ ତା' ମହକରେ ଡିକେନ୍ସଙ୍କ ଉପନ୍ୟାସ ଫର୍ଦ୍ଦରେ ବୋଳିଦେଲା ଅମୃତ !

ଦିନେ ଡିକେନ୍ସ ମରିଗଲେ କିନ୍ତୁ ଉପନ୍ୟାସ ରହିଲା ଜୀବିତ ! ଚିରବାଧିତା ପ୍ରେମିକାମାନେ ହେଲେ ସ୍ମୃତି ସଂଜୀବୀତ !

ଆଁ କର ଜୟନ୍ତୀ; ତୁମ ଆଁ'ରେ କଳସରୁ ମୁଁ ଓଜାଡ଼ି ଦେବି ଅମୃତ ! ଜୀବନ ଲାଗିବନି ନିସ୍ତରଙ୍ଗ ଗୋଟେ ପଡ଼ିଆ ଯେମନ୍ତେ ! କଂଚିମାଳାପରି ମାଛଟିଏହୋଇ ତୁମେ ପହଁରିବ ସୁଖର ସଜା ଶୋ'କେଶ୍‌ରେ ! କଂଚିମାଳା ପ୍ରଣୟ ପିଏ ! ନିଜ ଅଲକ୍ଷରେ ସିଏ ବାଣ୍ଟିଯାଏ ତା' ସୌନ୍ଦର୍ଯ୍ୟ ପୁଷ୍ପର ସୁବାସ ମନ୍ତ୍ରୀଠୁ କୁଷ୍ଠରୋଗୀ ଯାଏ ! ପବନକୁ ମନା କରିବ କିଏ ? ଆଉ ଜୟନ୍ତୀ ? ନାରୀଟିଏ ହୋଇ କାହା ହାଣ୍ଡିଶାଳେ ଚୁଲି ଫୁଙ୍କିବାକୁ ଚାହେଁ ! ମାତ୍ର ମୁଁ ଚାହେଁ ତାକୁ ନାରୀ ନୁହେଁ, କିନ୍ନରୀଟିଏ କରି ନନ୍ଦନ କାନନରେ ତା' ପଦପାତରେ ଅଧିର

କରାଇ ଦେବାକୁ ଦଶଦିଗପାଳଙ୍କୁ ! ମୁଁ ଅଭିଶପ୍ତ ଗନ୍ଧର୍ବ ଆସିଛି, ମୋ ବାଦ୍ୟର ତାଳେ ତାଳେ ତୁମକୁ ନଚାଇ ସ୍ୱର୍ଗଲୋକକୁ ନେଇଯିବାକୁ !

ତୁମ ଶାପମୋଚନର ଦିବସ ଉପସ୍ଥିତ ଅହଲ୍ୟା ! ଭଟ୍ଟୀ ପଢ଼ାଉଥାନ୍ତି ବ୍ୟାକରଣ ! ପାର୍ଶ୍ୱ ଦେଇ ଚାଲିଗଲା ହସ୍ତୀ ଶାବକ ! ଗୁରୁକୁଳ ନିୟମ ଅନୁଯାୟୀ ଅଶୁଦ୍ଧ ହୋଇଗଲା କାଳ । ଆଉ ପଢ଼ାଯାଇ ହେବନି ବ୍ୟାକରଣ ! ନିଷେଧ ଦୀର୍ଘ ଏକ ବର୍ଷ କାଳ ! ଭଟ୍ଟୀ ତେବେ ରାଜକୁମାରମାନଙ୍କୁ ବୁଝାଇବେ କ'ଣ ?

ଟିୟୁସନ ନକଲେ ଯୁଚିସି ଦରମାଟା ଯେ ନିଅଣ୍ଟ !

ତା'ନହେଲେ ମାନେ ବହି ଲେଖ, ପରୀକ୍ଷା ଖାତା ଦେଖା ଓ ମାନେ ବହି ଲେଖାରେ ମିଳେ ଭଲ ଦୁଇ ପଇସା !

ଭଟ୍ଟୀ ଲେଖିଲେ କାବ୍ୟ; ରାମାୟଣ କଥାବସ୍ତୁକୁ ଆଧାର କରି ବ୍ୟକରଣ ସୂତ୍ର ! ସାମ୍ନାରେ ପୁଲିସ୍ ଗେଟ୍; ଏଥର ଏ ବାଟେ ଆଉ ଯାଇପାରିବେନି କୌଣସି ଶାବକ ! ଅଶୁଦ୍ଧ ହେବନାହିଁ ଆଉ ବ୍ୟାକରଣ ! କି ଭଟ୍ଟୀ ବେକାର ହୋଇ ବସିବେନି ବର୍ଷେ କାଳ ! କି ଆଇଡ଼ିଆ; ମା' ରାଣ !

କଣ୍ଠିମାଳା ଆଖିରେ ଚହଟହ ଭୂଗୋଳର ରଙ୍ଗ ! ଭଟ୍ଟୀ ତ ବାବାଜୀ; ସିଏ କେମିତି ଜାଣିବେ ସିପାହୀ ସ୍ତ୍ରୀଲିଙ୍ଗ, କନେଷ୍ଟବଳ ପୁଲିଙ୍ଗ; ଯଦିଓ ଦୁହେଁ ଯାକ ମରଦ ! ଇଏ ଆମ ରାଷ୍ଟ୍ର ଭାଷାର ବୈଦ୍ୟୁତିକ କାମ ! କି କମକୁଟ ! ଭଟ୍ଟୀ ଅଯୋଧାର ଲୋକ ! ଅଯୋଧାରୁ ଗୋପ; ଡାହାଣ ହାତଠୁ ବାଁ ହାତର ଦୂରତ୍ୱ; ଭାଷା ଏକ !

ଡାକିଲେ ବାଳ ମୁକୁନ୍ଦ - କିଏ ନଟୁ ଖେଳିବ ? ଆସ ରେ ଆସ ନଟୁ ଖେଳିବ ! ମାଇଁ ସାଙ୍ଗେ ନଟୁ ଚୋରୀ ? କିଏ ଲେଖିଚି ଏ ବହି ? ଆମ ସାର୍ ? ଶହେ ଅଶୀ ପୃଷ୍ଠା ତାଙ୍କ ଥେସିସ୍, ତା' ପଛରେ ଦୁଇଶ ଅଶୀ ବହି ନାଁ ସହାୟତାରେ ବସିଛି !

'ଉଁ.... ଉଁ.... ଉଁ...... ଉଁ !'

'କ'ଣ, କ'ଣ କିରେ କାହ୍ନୁ ? କିଏ ମାଇଲା ତତେ ?'

'ଏଇ.... ଏଇ ରାଧା ମାଇଁ ! ଉଁ.... ଉଁ.... ଉଁ......'!

'ମୁଁ ? ମୁଁ ?'

'ହଁ, ହଁ ତମେ ! ତମେ ଲୁଚେଇ ରଖିଚ ମୋ ଦୁଇଟି ଯାକ ନଟୁ !'

'ଏ ମାଁ ? କି ମିଛୁଆଟା କିରେ ତୁ ! ମୁଁ ନେଇଚି ତୋ ନଟୁ ?'

'ମିଛୁଆ ମୁଁ ? ମୁଁ ମିଛୁଆ ? ନାଁ' ତମେ; ଝାଡ଼ିଲ ତମ ଛାତି ଲୁଗା ! ଲୁଚେଇନା ତା' ଭିତରେ; ହେଇ, ହେଇ ଉଁଆଉଁଆ କ'ଣ ସେ ଦିଇଟା ? '

କଂଚିମାଳା ! ନା, ନା, ମୁଁ ମୋଟେ ଛୁଇଁବିନି ତମ ଓଲଟ ଦେବଦାରୁ ବୃକ୍ଷାଗ୍ରକୁ ! ଭାସମାନ ମୁଲାଏମ ବଉଦର ଉତ୍ତରୀୟକୁ ! ଦୁଇ ମୁଠା କୁଚ ମୋ' ପାଇଁ ଦୁଇ ମୁଠା ପଖାଳ ! ଭଗବତ ଗୀତା, ସପ୍ତସତୀ ଚଣ୍ଡୀ ଓ ବାତ୍ସାୟନଙ୍କ କାମସୂତ୍ର - ତିନୋଟିଯାକଙ୍କ ଶ୍ଳୋକ ସଂଖ୍ୟା ସମାନ !

ଭଙ୍ଗୀଙ୍କ ଆଖିର ଆକାଶକୁ ଅନେଇଚି କଂଚିମାଳା ଦୃଷ୍ଟିର ନୀଳପକ୍ଷୀ । ପ୍ରଶ୍ନ ପ୍ରଣୟ ହୋଇ ଯାଉନିତ ? କଂଚିମାଳା ସ୍ନାୟୁର ଗଂଗା ନଈ ପାରି ହେଉଛନ୍ତି ପରାଶର ଋଷି ! ଆହ୍ଲାଦରତ କୁମାରୀ ସତ୍ୟବତୀର ଭୁଜ ହଳକ ବାରମ୍ବାର ସ୍ଫୀତ ଓ ସ୍ଫର୍ଦ୍ଧିତ କରୁଛି ମାଂସାଳ ପୃଥୁଳ ପୀତ କୋକୋନଦ ଯୋଡ଼ିକି ! କୁଆଁରୀ ଛାତି କେଉଁଠୁ ଆଣି ସଂପାଦିଛି କି ଭାରଭାର ନୀଳ ଜ୍ୟୋତ୍ସ୍ନା ! ତା' ଔଦ୍ଧତ୍ୟର ଇସ୍ କି ଭୁରୁଭୁରୁ ବାସ୍ନା !

କଂଚିମାଳା ପରଖି ନେଲା ତା' ଉଦଗ୍ର ସନ୍ତରଣରତ ସ୍ୱପ୍ନକୁ ।

ନା' ସବୁ ଠିକ୍‌ଠାକ୍ ଅଛି ! ଛାତିରୁ ଖସିନି ଲୁଗା ! ଅକପଟ ଉଚ୍ଚତା ଓ ଗୋଲେଇକୁ କେହି ଦେଇନି ଚାଲେଞ୍ଜ ! ସବୁ ଠିକ୍‌ଠାକ୍ ଅଛି ! ପଳାଶ ଫୁଲମାନଙ୍କ ପରି ଜ୍ୱଳନ୍ତ । ଗୋଲ୍‌ଗୋଲ୍ ପାହାଡ଼ମାନଙ୍କୁ ଦେଖନ୍ତୁ ଭଙ୍ଗୀମାନଙ୍କ ଦୃଷ୍ଟି ! ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ଗୋଟିଏ ସ୍ଥିର ଭୌଗଳିକ ବିନ୍ଦୁ ! ଦେଖନ୍ତୁ - ଦେଖି ଦେଖି ପ୍ରଶଂସା କରନ୍ତୁ ଉଦ୍‌ଥିତ ତୁଙ୍ଗ କୁଆରଙ୍କୁ ଓ ଜ୍ୟୋତ୍ସ୍ନାଙ୍କୁ ! ନ ଖାଇଲେ ବି ଆଘ୍ରାଣରେ ତ ପୂର୍ଣ୍ଣ ହୋଇଯାଏ ଅର୍ଦ୍ଧେକ ଉଦର । କ୍ଷୀଣୋଦରାର ସ୍ତନ ହଳକ ?

ରାଧା ଝାଡ଼ି ଦେଲେ ଛାତି ଲୁଗା !

ଠକ୍‌ଠାକ୍ ତଳେ ଖସିପଡ଼ିଲା ନଟୁ ଯୋଡ଼େ !

କଂଚିମାଳା ପରଖିନେଲା ଷ୍କୁଟର ପଛରେ ବସି ଏ' ପିଠିରେ ବାରମ୍ବାର ଠୋକରକୁ !

କପୋତ ପକ୍ଷୀ ହଳକ ବ୍ରଏଲର ଚିକେନ ପରି ଠିଆ ହୋଇଛନ୍ତି ! ଇସ୍ କି ଉଷୁମ୍ ଅଜଣା ପକ୍ଷୀର ମସୃଣ ସୁନେଲି ପୃଷ୍ଠ ! ମଣିଷ ହିଂସାର ଶାବକ !

ଏ' ତମେ ଅରଣ୍ୟ ଦେଖିଚ ? ନ ଦେଖିଥିଲେ ଦେଖ କଂଚିମାଳା ସ୍ତନ ହଳକୁ !

ସ୍ୱର୍ଣ୍ଣ ମୃଗ ଦେଖିଛ ? ନ ଦେଖିଥିଲେ ଦେଖ କଂଚିମାଳାର କାଚର କୁଚକୁ !

ରାବଣକୁ ଦେଖିବ ? ଦେଖ କଂଚିମାଳା ଡୋଳାର କାମାତୁର କୃଷ୍ଣମେଘକୁ !

ତା' ଚକ୍ଷୁ ପ୍ରାନ୍ତକୁ ଅନାଅ ଏ'; ଦେଖିବ ମାରିଚକୁ ! ତା' ଦେହତ ଲଙ୍କା ! ସୁନାର ଜରିରେ ତା' ଚର୍ମ ଚମକୁଛି !

'ସମୟ ଜରିର ଘୋଡ଼ା; ଦୌଡ଼େକୁଆଡ଼େ କିରେ ପିଲେ' ? ଭଟ୍ଟୀ ପ୍ରଶ୍ନ କଲେ ।

କଂଚିମାଳା ତା' ବକ୍ଷର ପାର୍ଶ୍ୱ ପରିବର୍ତ୍ତନ କରି ଭଟ୍ଟୀଙ୍କୁ ଦେଖାଇ ଦେଲା - ଜରିର ଘୋଡ଼ା ଏବେ ଚଢୁଛି ପାହାଡ଼ ଉପରକୁ ! ପାହାଡ଼ ଚୂଡ଼ାରେ ଅଛି ଗୋଟେ ଗୀର୍ଜା ! ପ୍ରାର୍ଥନାର ଘଣ୍ଟି ସେଠୁ ଚହଲାଇ ଦିଏ ତା' ସାରା ସତ୍ତା ! କ୍ରୁଶରେ କଣ୍ଟା ପିଟି ଯୀଶୁଙ୍କୁ ବାନ୍ଧି ରଖି କିଏ ସେଠି ବାଢ଼େ ପ୍ରାର୍ଥନାର ଅନୁତାପ କଂଚିମାଳା ଜାଣେନା । କଂଚିମାଳା କିନ୍ତୁ ଜାଣେ ପ୍ରାର୍ଥନାର ପବନରେ ଅଛି ଗୁଡ଼ିଏ ପୁଷ୍ପର ପାଖୁଡ଼ା ପରି ମିଠା ମିଠା ଟିପର ସ୍ପର୍ଶ ! ଶିମିଳି ତୁଳା ପରି ସେମାନେ ଉଡ଼ି ଆସି ବାଜନ୍ତି ଚକ୍ଷୁରେ ଏବଂ ଚକ୍ଷୁରୁ ଚୋରି ହୋଇ ଯାଏ ବର୍ତ୍ତମାନ ! ଶୂନ୍ୟ ଆଖିର ବଖରାରେ ଭର୍ତ୍ତି ହୋଇଯାଏ ଚୁମ୍ବନ !

'ଦାଢ଼ି ସାଲୁବାଲୁ ଆପଣଙ୍କ ମସିଆ ରଂଗର ମୁହଁରେ ନେସିଦେବି ନାଲି ଓଠର କମଳା କୋଇ ? ଦେଖିବେ, ଦେଖିବେ ସୂର୍ଯ୍ୟାସ୍ତ ଦେଖିବାକୁ ଲାଗେ କେମିତି ?'

ଶରତ ଋତୁର ଗୋଟିଏ ସନ୍ଧ୍ୟା କଂଚିମାଳା ଖୋଲି ଦେଖାଇଦେଲା ଭଟ୍ଟୀଙ୍କି !

ବଖରା ସାରା ଅନ୍ଧାର ! ବଖରା ସାରା ଲାଲ ଗରଗର ! ବର୍ଷା ଛାଡ଼ି ଯାଇଛି । ଓଦା ରାସ୍ତାରେ ହଲି ଦୋହଲି ସ୍ୱାମୀ ସ୍ତ୍ରୀ ରିକ୍ସାରେ ଯାଉଛନ୍ତି ଯେମିତି ! ଝାମ୍ପୁରା ସେ ରିକ୍ସା ବାଲାଟା ଗୋଟାଏ ଦେହୁରୀ; ଗାଁ ଛାଡ଼ି ପଳାଇ ଆସିଥିବା ଖାସ୍ କଳାହାଣ୍ଡି ! ତା' ପେଟରେ

ଭାତ ନାହିଁ; ଖାଲି ହାଣ୍ଡିଆ ଓ ଚୋରାରେ ବିକ୍ରୀ ହେଉଥିବା ମହୁଲୀ !

କଂଚିମାଳା ଏଥର ଖୋଲି ଦେଲା ତା' ବ୍ରା' !

ଟନେଲ୍ ଭିତରେ ବିଛେଇ ହୋଇ ପଡ଼ିଲା ଟ୍ରେନ୍ ଲାଇଟ୍ ! ଦୁଇଟି ଧାରଣା ସାପ ପରି ଶୋଇଛି !

ସାପ ସବୁବେଳେ ସେକ୍ସର ପ୍ରତୀକ । କଂଚିମାଳା ସେକ୍ସ ଖୋଜୁଚି ଏହି ଟ୍ରେନ୍ ଭିତରେ ?

କଂଚିମାଳା ପେଟ ଭିତରେ ସାପ ପରି - ଯେଉଁ ମାଂସର ଧାରଣାଟି ତା' ଭିତରେ ବିଲୁପ୍ତ ଆଦିମବାଦର ନିଷ୍କଳଙ୍କ ସାହିତ୍ୟ ଭର୍ତ୍ତି ହୋଇଛି ! ସାହିତ୍ୟ ଭର୍ତ୍ତି ସେ ମନକୁ ଚିଠିଟିଏ ପରି ବଢ଼ାଇଦେଲା ସେ ମୋ' ହାତକୁ । ମୁଁ ତ' ନିରାମିଷାଶୀ ! ଜଣେ ମହାତ୍ମା ଗାନ୍ଧୀ !

ତମ କାଛରେ ଗାନ୍ଧୀ ଫଟୋ ଅଛି ? ମଦ ଦୋକାନ ନିଲାମ ଜାରି ରଖ ! ଏ' ଅବକାରୀ ମଣ୍ଡଳ ଅଧିକ୍ଷକ ? ଚୌକୀରେ ଜାଗା ହେଉନି ତା' ପିଚା ଓ ଅଣ୍ଡା ଉପର ମାଂସ ! ଏବେ ଆଉ ସିଏ ଖାଏନାହିଁ ଭାତ । ତାକୁ ଡାଇବେଟିସ୍; ଏବେ ଖାଲି ପତଳା ପତଳା କାଗଜରେ ତିଆରି ଟଙ୍କା ଖାଉଚି ! ଟଙ୍କାରେ ତ ମୋଟେ ସୁଗାର ନାହିଁ ! କଂଚିମାଳା ସ୍ତନରେ କ'ଣ ସୁଗାର ଅଛି ?

ସାବରମତୀ ଆଶ୍ରମରେ ସଂଧ୍ୟାହେଲେ ଲିଭାଇ ଦିଆଯାଏ ଆଲୋକ । କାରଣ ଆଲୋକ ପ୍ରତି ଆକୃଷ୍ଟ ପତଙ୍ଗ ଉଡ଼ିଆସି ପ୍ରାଣ ବିସର୍ଜିଲେ ଗାନ୍ଧିଜୀଙ୍କ ଅହିଂସା ଧର୍ମ ହାନୀ ଘଟିବ ! ସଂଧ୍ୟା ପ୍ରାର୍ଥନା ପରେ ସମସ୍ତେ ଶୋଇ ପଡ଼ନ୍ତି; ଭୋରୁ ଉଠିଲେ ପୁଣି ରାମଧୂନ୍ !

ଶୀତ ରାତି ! ଶୀତଳ ହୋଇଯାଉଥିବା ଗାନ୍ଧିଜୀଙ୍କ ବୟସ୍କ ଦେହକୁ ଦୁଇପଟୁ ଦୁଇଜଣ ଉଲଗ୍ନା ଯୁବତୀ ଯାକି ଧରି ଉଷ୍ମତା ଭରନ୍ତି ! ବାଇବେଲରେ 'ଅବିଷ୍ୟା' ଯେମିତି ଡାଭିଡ୍‌ର ମୃତ୍ୟୁବେଳେ କରିଛି !

ସେ ନାରୀତ ଅସତୀ ହୋଇ ଯାଇନି !

ଜୟନ୍ତୀ ଡରୁଚି, ମୁଁ କାଳେ ତାକୁ ପଥଚ୍ୟୁତ କରୁଚି ? କଂଚିମାଳା ଜାଣେ ନାରୀର ପଥ

ଗୋଟିଏ; ତା' ହେଲା ହେବା ମୈଥୁନିତା !

ଓଲ୍ଡ଼ ଟେଷ୍ଟାମେଣ୍ଟର ଲେଖକ ସାତ ? ବହିକୁ କରିଛନ୍ତି ସାତଭାଗ ! ପ୍ରଥମେ ଲେଭିଟିକସ୍, ଦ୍ୱିତୀୟ ଡ୍ୟୁଟେରୋମୋନି, ତୃତୀୟ ଜଜେସ୍, ଚତୁର୍ଥ ପ୍ରୋଭର୍ବସ୍, ପଞ୍ଚମ ଇଶାହ, ଷଷ୍ଠ ଜେରିମିହ ଏବଂ ସପ୍ତମ ଇଜେକିୟେଲ୍ । ଇଜେକିୟେଲ୍ କହନ୍ତି ଗଣିକା, ଓ୍ୱମ୍ୟାନ୍ ଅଫ୍ ଜୟେ !' ନାରୀର ସୁପ୍ରିମ୍ ମିଶନ୍ ହେଲା ପ୍ରଷ୍ଟିଚ୍ୟୁଏସନ୍, ଆର୍ଟିଷ୍ଟିକ୍ ଭାବେ !

କଂଚିମାଳା ବାଇବେଲ୍‌କୁ ଚିରିଦେଲା !

ଭଙ୍ଗୀ ଏଥର ଫିଟେଇଲେ ମହାଭାରତ ପୋଥି ! ଧର୍ମ ବସୁନାଭ ମହାରାଜାଙ୍କୁ ଆତ୍ମହତ୍ୟା କଲାବେଳେ ନିବୃତ୍ତ କରି ବୁଝାଉଛନ୍ତି : ସବୁ ପୁରୁଷ ନିଜ ନିଜ କଲା କର୍ମର ଆଲୋଚନା କରନ୍ତି ! ମହାରାଜ ବସୁନାଭ, ଏପରି କେହି ପୁରୁଷ ଜଗତରେ ନାହାନ୍ତି ଯାହାଙ୍କ ମନ ରହିଛି ଅଦୂଷିତ ! ବିବିଧ କାରଣରୁ ଯନ୍ତ୍ରଣାରୁ ମୁକ୍ତି ପାଇଁ ଆର୍ଟିଷ୍ଟ ଜଣେ ଆତ୍ମହତ୍ୟା କରୁଛି ? କେଉଁ ବଡ଼ କାମଟା ଯେ କରୁଛି ? ଆଉ କେତୋଟି ବର୍ଷ ପରେ ପୁରୁଣା ଦେହଟାକୁ ତା'ଠୁ ନେଇଯାଇଥାନ୍ତା ପ୍ରକୃତି ! ସିଏ ଏବେ ଯାଚି ଦେଇଛି ? ତା'ପାଇଁ ଦାଗଲଗା ମଣିଷଙ୍କ ପ୍ରଳାପରେ କିଛି ପବିତ୍ରତା ନଥାଏ ! ଥାଏ ଘୋର ବିଜ୍ଞାପନ; ମୃତ ଆତ୍ମାପ୍ରତି ଅପମାନ ! ଧର୍ମ ନିବୃତ୍ତ କଲେ ବସୁନାଭକୁ । ମରନା, ମରନା ବସୁ, ତତେ ଦିନେ ମରିବାକୁ ପଡ଼ିବ; ତୁ ନଚାହିଁଲେ ବି ତୋ ଏ ଦେହର ଲୁଗାଖଣ୍ଡି ଦିନେ ମଇଳା ଓ ପୁରୁଣା ହେବ ! ସମୟ ଏକ ଚତୁରୀ ଧୋବଣୀ; ତତେ ଉଲଗ୍ନ କରି ତୋଠୁ ଏ ଲୁଗାଖଣ୍ଡି ଛଡ଼ାଇ ନେବ !

କଂଚିମାଳା ବୋର୍ ହେଉଛି ? ଇସ୍ କି ବାଜେ ଲୋକ ହାବୁଡ଼ରେ ମଣିଷ ପଡ଼ିଛି । ରୁମାଲ୍ କାଢ଼ି ମୁହଁଟା ଟିକିଏ ପୋଛିନେବ ?... ଭଙ୍ଗୀ ବଦଳାଇ ଦେଲେ ଅଧ୍ୟାୟ । ଆରମ୍ଭ କଲେ ନୂଆ ପାଠ ।

ଅର୍ଥାତ୍ ପଞ୍ଚଚୂଡ଼ା ନାମ୍ନୀ ଅପ୍ସରୀ ବୁଝାଉଚି ନାରଦଙ୍କୁ ଏଚ. ଡିୟୁଟ୍‌ସଙ୍କ 'ସାଇକୋଲୋଜି ଅଫ୍ ଓ୍ୱମେନ୍' ! ଆଡଲେର୍‌ଙ୍କ 'ଦି ନିରୋଟିକ୍ କନ୍‌ଷ୍ଟିଚ୍ୟୁଏସନ୍' ? ... ଯଦି ନାରୀଙ୍କୁ ଅନ୍ୟ ପୁରୁଷ ସହିତ ମିଳାମିଶା ହେବାର ଅବସର ମିଳେ ସେ ସଦ୍‌ଗୁଣରେ ବିଖ୍ୟାତ, ଧନବାନ୍, ଅନୁପମ, ରୂପସୌନ୍ଦର୍ଯ୍ୟଶୀଳ ତଥା ନିଜ ବଶରେ ସ୍ଥିତ ପତିର ପ୍ରତୀକ୍ଷା ରଖେନା । ସିଏ ନଇଟିଏ ହୋଇ ମିଶାଇ ଦିଏ ତା' ଦିହ ! ମାତ୍ର ଆଣ୍ଡେରସନ୍ ହିଇ୍ ଓନ୍‌ଲି ସେକ୍ସୁଆଲ୍ ଆଉଟଲେଟ୍ ଓ୍ୱାକ୍

ମାଷ୍ଟରବେସନ୍ । ... ସେଇଥି ପାଇଁ ସିଏ ନିନ୍ଦିତ ।

ସୁନ୍ଦର କତାଡ଼ଙ୍କା ସଢ଼େଇ ଆବଦ୍ଧ ନାରିକେଳ ଶୁକପକ୍ଷୀର ହେବ କ'ଣ ? ତା' ପାଇଁ ଭଲ ବରଫଳ ।

କଂଚିମାଳା ଭଟ୍ଟୀଙ୍କୁ ଅନେଇ ନେଲା ଦୀର୍ଘ ନିଃଶ୍ୱାସ ! ଥରେ ସ୍କୁଲ୍‌ର ଯୁବତୀ ନନ୍‌ର ୟୁନିଫର୍ମ ଫିଟିଗଲା ! ହଠାତ୍ ବାରବର୍ଷର ଭୟେର୍ କିଶୋର କଳା ମୁଚୁମୁଚୁ ଉଷୁମ୍ ତା' ପ୍ରାଇଭେଟ୍ ପାର୍ଟରେ ହାତ ମାରିଦେଲା । ପିଲାଟି ହେଲା ଡି. ଅନୁଂଜିଓ 'ଦି ଫ୍ଲେମ୍ ଅଫ୍ ଲାଇଫ୍' ତାଙ୍କ ଉପନ୍ୟାସ । ସିଏଥିଲେ ମୁସୋଲିନ୍‌ଙ୍କ ସହାୟକ ! ତାଙ୍କ ରଚିତ ପ୍ରଥମ କବିତାଗ୍ରନ୍ଥ ପଢ଼ି ହେନ୍‌ରି ଜେମ୍ସ କହିଥିଲେ 'ଭଲ୍‌ଗାର' ! ସେମିତି ମୁଁ କହିଛିତ ?

ବାର୍ବରିଲିଓନି ତାଙ୍କ ପ୍ରେମିକା । ୧୮୮୭ରେ ଲକେଟରେ ପୂରାଇ ସାଇତି ଥିଲେ, ଔପନ୍ୟାସିକ ଗୋଟିଏ ତା' କେଶ ! ତାଙ୍କ ଅନ୍ୟ ଖଣ୍ଡିଏ ଉପନ୍ୟାସ 'ଦି ଇନୋସେଂଟ୍' ବାର୍ବରାର ନଗ୍ନ ଦେହସାରା ଗୋଲାପ ପାଖୁଡ଼ା ବିଂଚି ସିଏ ରଚୁଥିଲେ ସହବାସ !

ସତେରେ ବାର୍ବରଟା କ'ଣ ଏତେ ସଫ୍‌ଟ ଓ ଇନୋସେଣ୍ଟ ଥିଲା ଜୟନ୍ତୀ ଲେଖା ? ରହିରହି ଭଟ୍ଟୀ ଆବୃତ୍ତି କରୁଛନ୍ତି :

'ସ୍ତ୍ରୀୟଂ ହି ଯଃ ପ୍ରାର୍ଥୟତେ ସଂନିକର୍ଷ ଚ ଗଛତି ।

ଇଷଣ୍ଣ କୁରୁତେ ସେବାଂ ତମେବଛନ୍ତି ଯୋଷିତଃ ।'

ଅର୍ଥାତ୍ ଯେଉଁ ପୁରୁଷ କୌଣସି ସ୍ତ୍ରୀକୁ ଚାହେଁ ତା' ପାଖ ପର୍ଯ୍ୟନ୍ତ ପହଞ୍ଚେ ଓ ତା'ର ସ୍ୱଳ୍ପ କିଛି ସେବା କରିଦିଏ ତାକୁ ସେ ଯୁବତୀ ଚାହିଁବାକୁ ଲାଗେ ! ତା' କାମନାର ପ୍ରସ୍ଫୁଟିତ କୁସୁମରେ ଭର୍ତ୍ତି କରିଦିଏ ନିଜ ମନର ବଖରା ।

ଜୟନ୍ତୀ, ତୁମ ମନର ବଖରାରେ ମୋ ପ୍ରାପ୍ତିର କାମନା ଅଛି ? ତୁମ କୁଆଁରୀ ମନକୁ କିଣି ନେଲାଭଳି ସେବା କ'ଣ କିଛି ମୋ ପାଖରେ ରହିଛି ? ମୁଁ ନିଃସ୍ୱ ପୁରୁଷ । ଭଟ୍ଟୀଙ୍କପରି ବଢ଼ି ଯାଇଛି ମୋ' ବୟସ । ସେ ବୟସ୍କ ମୁହଁରୁ କଂଚିମାଳା କେଉଁ ରତ୍ନ ସଂଗ୍ରହ କରେ କେଜାଣି ! ଫ୍ରଏଡ୍‌ଙ୍କ 'ଡାଡି କଂପ୍ଲେକ୍ସ' ?

ମାରିଆ ବେଡନିଲ୍ ଜଣେ ବିଂଶ ବର୍ଷିୟା ଯୁବତୀ, ତେୟାଳିଶ ବର୍ଷ ବୟସ୍କ ଡିକେନ୍ସଙ୍କୁ କୋଡ଼ିଏ ବର୍ଷ ତଳୁ ମୃତ ତାଙ୍କ ଯୌବନକୁ ଦେଉଥାଏ ନୂଆସ୍ୱପ୍ନ ଓ ନୂତନ ମୂର୍ତ୍ତିର ଆକୃତି ! ଡିକେନ୍ସ ତାକୁ ପ୍ରତ୍ୟୁତ୍ତରରେ ଲେଖିଥିଲେ 'ମୁଁ ଟୁଥିଲେଶ୍, ଫ୍ୟାଟ, ଓଲଡ ଏଣ୍ଡ ଅଗ୍ଲି' ! କେମିତି ତୁମେ ମତେ ଦେବ ତୁମ ଦେହର ସୁନା ଶୁଆଟିକି; ମନର ବହନ୍ତା ଦୁଗ୍ଧର ନଦୀ ?

ବିଦ୍ୱାନ ପୁରୁଷର ବାଣୀ ଯେମିତି ଦୁର୍ବୋଧ; ନାରୀ ମନ ବୁଝିବା ଠିକ୍ ସେମିତି କଷ୍ଟସାଧ । ରମଣୀମାନଙ୍କ ସମ୍ବନ୍ଧରେ ସବୁଠୁ ରହସ୍ୟପୂର୍ଣ୍ଣ ତଥ୍ୟ ହେଲା : 'ଦୃଷ୍ଟୈବ ପୁରୁଷଂ ହୃଦ୍ୟଂ ଯୋନିଃ ପ୍ରକ୍ଲିଦ୍ୟତେ ସ୍ତ୍ରିୟାଃ ।' ମନୋରମ କୌଣସି ଯୁବକକୁ ଦେଖିବା ମାତ୍ରେ ରମଣୀଙ୍କ ରମଣୀୟ ଯୌନାଙ୍ଗ ହୋଇଯାଏ ଆର୍ଦ୍ର !

ଅନୁଶାସନ ପର୍ବରେ ଏହା ବ୍ୟାସଙ୍କ କବିତା ! ମୁଁ କହୁନି; 'ମାନସ'ର ନାହିଁ ଏ ଅଭିଜ୍ଞତା ! ଅଶ୍ଳୀଳର ପରିଭାଷା କ'ଣ ମୁଁ ଜାଣେନା ! ସ୍ତନକୁ ସ୍ତନ କୁହାଯିବ ନାହିଁ ତ ଆଉ କ'ଣ କୁହାଯିବ, ଟେବୁଲ୍ ? ଯୋନିକୁ ଛାଞ୍ଚୁଣୀ ? କହିବା ପଛରେ ନିହିତ ଉଦ୍ଦେଶ୍ୟଟିକୁ ଲକ୍ଷ୍ୟରଖି ଦିଆଯାଏ ମନ୍ତବ୍ୟ, ତାହା ଆର୍ଟିଷ୍ଟିକ୍ ନା' କୁତ୍ସିତ ! ଏବେ ନଗ୍ନତା ଦୁଇ ପ୍ରକାର !

ଆର୍ଟିଷ୍ଟିକ୍ ଓ ଭଲଗାର୍ ! 'ଭଲଗାର୍' ଦ୍ରଷ୍ଟାର ଚକ୍ଷୁରେ ରହିଛି !

ଅର୍ଦ୍ଧନଗ୍ନ ଅବୟବ ଓ ଚୋଲୀ ଦେଖି ଦେଖି 'ଚିତ୍ରହାର'ରୁ ବଦଳି ଗଲାଣି ଆମ ଦୃଷ୍ଟି । ସବୁ ଦେହାଂଶ; ଗୁପ୍ତାଙ୍ଗ ବୋଲି ନାହିଁ କିଛି । 'ଗୁପ୍ତାଙ୍ଗ' ଗୋଟାଏ ଭିକ୍ଟୋରିଆ ଯୁଗର ଶବ୍ଦ; ଶବ୍ଦଟିରେ ବିଂଶ ଶତକର ଆଧୁନିକବାଦ ଟୋଟାଲ୍ ଶୂନ । କଳାରେ ବାସ୍ତବବାଦର ପ୍ରବର୍ତ୍ତକ ଗୁଷ୍ଟାଭ କରବେଟ୍ ତାଙ୍କ ଷ୍ଟୁଡିଓରେ ଖାଲି ପେଂଟ୍ କରୁଥିଲେ ଯୁବତୀ ମଡେଲ୍‌ଙ୍କ ଯୌନାଙ୍ଗ ! ସିଏ ଥିଲେ ଫ୍ରାନ୍ସ, ପାରିସ୍‌ର ଲୋକ !

ଶ୍ରୀମନ୍ଦିର ମିଥୁନ ମୂର୍ତ୍ତି ପଥରକୁ ହାଣି ଯେଉଁମାନେ ରଚିଛନ୍ତି ସେମାନେ ସବୁ କଂଟିମାଳା ଢେଙ୍କେର ଢେଙ୍କେ !

ନିଜର ଚିହ୍ନା ଚିହ୍ନା ବ୍ୟର୍ଥତା ପାଇଁ କାହିଁକି ସିଏ କରିବ ଲାଜ !

ଜଣେ ଲୋକ ତା'ର ଶେଷ ସମ୍ବଳ କ୍ଷେତ ଖଣ୍ଡିକ ବିକ୍ରୟ କରି ବଡ଼ିଲା ଝିଅ ପାଇଁ ଦୁଇ ଦିନପରେ ନିର୍ବଂଧ ବେଳେ ଜାମାତାକୁ ଯୌତୁକ ଦେବାକୁ ପେଟେରାରେ ସାଇତି ଥିବା ଟଙ୍କା ତକ

ମଧ୍ୟ ରାତ୍ରିରେ କେହି ଲୁଚି ନେଲାବେଳେ ଯଦି ନିଜର ସୁରକ୍ଷା ଓ କର୍ମସିଦ୍ଧି ପାଇଁ ସିଏ ଗାନ କରୁଥାଏ ବିଷ୍ଣୁ ସହସ୍ର ନାମ ତେବେ କ'ଣ ତାକୁ କୁହାଯିବ ଭକ୍ତ ? କେଉଁ ଅବିବେକ କହିବ ମଧ୍ୟପର ନିଶାରେ ଭଜନଗାନ ସଂକୀର୍ତ୍ତନ, ପବିତ୍ର ଓ ଆଧ୍ୟାତ୍ମିକ ?

କଂଚିମାଳାର ଦୃଷ୍ଟିକୁ ମୋ ଧନ୍ୟବାଦ ।

ମଂଚେଶ୍ୱର ରେଲ୍ ଷ୍ଟେସନ୍ । ଡବା କାଟି ଫେରି ଆସିଲାଣି ଇଂଜିନ୍ । ନାଲି ସିଗନାଲ୍ ଦେଖାଯାଉଛି ଯେମିତି ଖଣ୍ଡେ ଆଙ୍କୁଡ଼ି । କେହି ଜଣେ କହୁଚି; ଏ ଗାଡ଼ି ଏବେ ଛାଡ଼ିବନି । ଆସୁଛି ଧଉଳି । ଧଉଳି ଏକ୍ସପ୍ରେସ୍ ଗଲାପରେ ଆସିବ ଫାଲକ୍‌ନାମା; ତା'ପରେ ଯାଇ ୟା ପାଳି.... ବିଳମ୍ବ ଏବେ ତିନି ଘଣ୍ଟାକୁ ଟପି ଗଲାଣି ।



# ପାଠ ମଣିଷର ଆତ୍ମା

ସାହିତ୍ୟ ଶବ୍ଦର ନିର୍ମାଲ୍ୟ । ବାକ୍ ଆତ୍ମାଙ୍କ ପ୍ରକାଶକ ।

ଥରେ ବାଳକ ସନତ୍‌କୁମାରଙ୍କୁ ପୁଚ୍ଛା କଲେ ବୃଦ୍ଧ ଦନ୍ତହୀନ ନାରଦ - 'ହେ ଭଗବାନ ! ମୁଁ ଶୋକାତୁର । ମତେ ଶୋକସରିତ କରାଇ ଦିଅନ୍ତୁ ପାର ।' କିଶୋର ସନତ୍ କୁମାର ଜିଜ୍ଞାସା କଲେ ବୃଦ୍ଧଙ୍କ ଅଧ୍ୟୟନର ସୀମା କେଉଁ ପର୍ଯ୍ୟନ୍ତ ?

ନାରଦ କହିଲେ - 'ମୁଁ ପଢ଼ିଛି ବହୁତ ପାଠ । ଋକ୍, ଯଜୁ, ସାମ୍ ଓ ଅର୍ଥବ ବେଦ, ଇତିହାସ-ପୁରାଣ ରୂପକ ପଞ୍ଚମ ବେଦ, ବ୍ୟାକରଣ, ଶ୍ରାଦ୍ଧକଳ୍ପ, ଗଣିତ, ଉତ୍ପାତ ଜ୍ଞାନ, ନୀତି ଶାସ୍ତ୍ର, ତର୍କଶାସ୍ତ୍ର, ନିରୁକ୍ତ, ଶିକ୍ଷା, ଜ୍ୟୋତିଷ, ଧନୁର୍ବେଦ, ଭୂତତନ୍ତ୍ର, ଗାରୁଡ଼ ଓ ସଂଗୀତ ବିଦ୍ୟା ପାରଙ୍ଗମ ମୁଁ । ଏତେ ପାଠ ପଢ଼ି ମିଳୁନି ଚାକିରୀ କିଂବା ଶାନ୍ତି ! ଶେଷକୁ ବହି ଦୋକାନଟିଏ ଖୋଲିଚି ! ଇଂଲଣ୍ଡରେ ପ୍ରସିଦ୍ଧ ଲେଖକ ସବୁ ବହି ଦୋକାନରେ କରିଥାନ୍ତି ଚାକିରୀ ।

ମୁଁ ଲେଖିଚି 'ନାରଦ ସୂତ୍ର ।' ପଢ଼ିଛନ୍ତି ମୋ ବହି ଖଣ୍ଡିକ ?

ସନତ୍ କୁମାର କହିଲେ ତୁମେ ଯାହା ସବୁ ଜାଣିଛ ସେଗୁଡ଼ାକ ନୁହେଁ ପାଠ ! ଖାଲି ଶବ୍ଦ ! 'ଆଚାର୍ଯ୍ୟବାନ୍ ପୁରୁଷୋ ବେଦ ।' ଆଚାର୍ଯ୍ୟବାନ୍ (ଗୁରୁ) ପୁରୁଷ (ଆତ୍ମା)ଙ୍କୁ ଜାଣିଥାନ୍ତି ! 'ଯତୋ ବାଚୋ ନିବର୍ତ୍ତତେ ।' ଶବ୍ଦ ଯାହାଙ୍କୁ ନଜାଣି ପାରି ଲେଉଟି ଆସନ୍ତି ! ପିତଳ ପ୍ରତିମାକୁ ବିଷ୍ଣୁ ଭାବି ଉପାସନା କଲାପରି ଶବ୍ଦକୁ ବ୍ରହ୍ମ ଭାବି ପ୍ରଥମେ ଉପାସନା କର ।

ନାରଦ କହିଲେ 'ସୋ ହଂ ଭଗବୋ ମନ୍ତ୍ରବିଦେ ବାସ୍ମି ।' ହେ ଭଗବାନ୍ । ମୁଁ ମନ୍ତ୍ର ବହୁତ ଜାଣିଚି କିନ୍ତୁ ଆତ୍ମାଙ୍କୁ ଜାଣି ନାହିଁ, 'ନା ଆତ୍ମାବିଚ୍ଛୁତମ୍' ।

ପାଠ ମଣିଷର ଆତ୍ମା । ଯାହା ତୁମେ ବିକୁଚ ସେଗୁଡ଼ା କାଗଜ ତିଆରି ବହି; ନୁହେଁ ପାଠ ।

ଶବ୍ଦର ଅଭିପ୍ରାୟ ଜ୍ଞାନାଦିର ବିଜ୍ଞାପନ ଓ ଭାବାଦିର ବିନିମୟ ! ମନ୍ଦ ଭାବାଦିର ବିନିମୟ ବାକ୍ ଅପବ୍ୟୟ । ଆଣ୍ଡେରସନ୍ ଖବରକାଗଜଙ୍କୁ ଦେଇଛନ୍ତି ବିବୃତ୍ତି - 'ସିଏ ପରିଣତ ବୟସ୍କ' । କ'ଣ ନାରଦଙ୍କଠୁ ବେଶୀ ? ତାଙ୍କୁ କାମ ମଡେଇବା ମିଛ; ସୁଧୁ ଶବ୍ଦରେ ଫେଶନ୍ ? ଭଲହେଲା ଫେଶନ୍ ଶୋ ଚଳନ୍ତି ସଂସ୍କୃତିର ପ୍ରାକୃତିକ ଅବଦାନ । ଏବେ ସିଏ ପରିଣତ ବୟସ୍କ । ବୟସ ବଢ଼ିଗଲେ ବଢ଼ିଯାଏ ବାର୍ଦ୍ଧକ୍ୟ, ନୁହେଁ ବୋଧି ! ଅଧ୍ୟୟନ କଲେ ମାର୍ଜିତ ହୁଏ ବୁଦ୍ଧି । ତେଣୁ ତୁମେ ଶବ୍ଦକୁ ବ୍ରହ୍ମ ଭାବି ଆରାଧନା କର ।

ବିତର୍କିତ ଓ ଅଭିଯୁକ୍ତ 'ପଥ ଓ ପୃଥିବୀ' ସାମ୍ନାକୁ ଆସୁଛି ମନ୍ଦ ସ୍ୱଭାବକୁ ଯୋଗାଇ ଦେବାକୁ ମଦ ? ମାତାଲର ସାକ୍ଷୀ କେବେ ହୁଏ ନାହିଁ ଶୁଣ୍ଡି ବରଂ ଶୁଣ୍ଡି ସାକ୍ଷୀ ମାତାଲ । ବହିଟିର ବାସ୍ତବତା ପ୍ରତି ସମୀକ୍ଷକ ଦେଇ ନାହାନ୍ତି ଦୃଷ୍ଟି !

ବାସ୍ତବତା ବୋଲି ସେ ବହିଟିରେ କିଛି ଥିଲେ ତ ! 'ବାଇରନ୍ ୱାଜ୍ ନଥିଙ୍ଗ୍ ମୋର୍ ଦେନ୍ ଏ ଡ୍ରଙ୍କଡ୍' ଲର୍ମାଣ୍ଟୋଭଙ୍କ ପ୍ରସିଦ୍ଧ ବହି 'ଏ ହିରୋ ଅଫ୍ ଆୱାର ଟାଇମ୍' ରେ ଜଣେ ମସ୍କୋ ମହିଳା ଦାବୀ କରିଛି ! ଆଉ ନାରଦ ହୁଇସ୍କି ପିଇ ଲେଖିଛନ୍ତି ନିଜ ବାର୍ତ୍ତିକ ! ଭାଗବତଠୁ କୁଆଡ଼େ ଆହୁରି ପବିତ୍ର ?

ଭାଗବତ; ଯାହା ଶ୍ରବଣରେ ମୁମୂର୍ଷୁ ଆତ୍ମା ଲାଭ କରେ ଅମୃତ, ତା ଦେହରୁ ପରିସ୍ରା ନଳାର ଗନ୍ଧ ବାରିପାରେ ଏକା ଅଧମ ! ତାଙ୍କୁ ମାନବ ବୋଲି କିଏ କହିବ ? ଗୋମୟ; ଯାହା ଲିପାରେ ମାତା ବସୁଧା ହୁଏ ପବିତ୍ର ତାକୁ କିଏ 'ବିଷ୍ଠା' କହିବ ?

କି ବହି ଲେଖିଛନ୍ତି ଆପଣ ?

ନାରଦସୂତ୍ର !

'ରୋହିତର ଡାଏରୀ'ଠୁ ବଡ଼ ନା 'କାନ୍ଦଣା ଲହରୀ'ଠୁ ଆୟୁଷ ତା ଦୀର୍ଘ ? ଆପଣ ଲେଖିଛନ୍ତି ଖଣ୍ଡିଏ କାମସୂତ୍ର ନା ଭାଗବତ ? କି ବହି ସେଇଟା । ରଦ୍ଦି ଟଙ୍କିକିଆ ଲଟେରୀ

ଟିକଟଠୁ କ'ଣ ସୁଂଦର ଛପା !

ଏ' ତୁମେ ଭାରି ସ୍ମାର୍ଟ । ଲେଖିଚ କି ବହି ? କାଂଦଣା ଲହରୀ ନା' ଖୁଦୁରୁକୁଣୀ ଓଷା ! ଉପନ୍ୟାସ ଦୁଇଟା ! କଂଚିମାଳାର କୁଚପରି ଆକର୍ଷଣୀୟ ଓ ମୋଟା ମୋଟା; ବାଃ !

ଗଣେଶ ନାବାଳକ ! ୧୯୯୫ ସେପ୍ଟେମ୍ବର ଏକୋଇଶ ତାରିଖ, ସାରା ଭାରତ ହୋଇଗଲା ପ୍ରସାରିତ ! ରହସ୍ୟ ନା' ଅଲୌକିକ ? ଗଣେଶମାନଙ୍କ ପାଖରେ କି ଭିଡ଼ ! ଚାମୁଚରୁ ଶୋଷି ଗଲେ କ୍ଷୀର । ଠିକ୍ ସେମିତି ତୁମ ବହି ? ରୋମ୍‌ଠୁ ପଚାଶ କିଲୋମିଟର ଦୂର 'ସିଭିଟାଭେସିହିଆ' ଛୋଟ ଗୋଟେ ସ୍ଥାନ ! ପୁରୋହିତ ପରିବାର ଦାବୀ କଲେ ଚର୍ଚ୍ଚରେ କାଂଦୁଛନ୍ତି କୁମାରୀ ମେରୀ ! ସେହି ବର୍ଷ ଏପ୍ରିଲ୍‌ରେ ସାପ୍ତାହିକ 'ଇକୋନୋମିଷ୍ଟ' ଲେଖିଚି ମାଡୋନା ଚକ୍ଷୁରୁ ଶୋଣିତ କ୍ଷରୁଛି ! ପୁତ୍ର ଯୀଶୁଙ୍କ ରକ୍ତ । ସତ !

ଟି.ଭି. ତ ଦେଖେଇଚି ଗଣେଶଙ୍କ ଦୁଧ ପିଆ ଦୃଶ୍ୟ !.... କଂଚିମାଳା ତମ ଫାର୍ଶରେ ନା' ଫାଶରେ ଭାରି ମୁଗ୍ଧ ? ଏତେ ମୁଗ୍ଧ ଜୟନ୍ତୀକୁ ମୁଁ କେବେ କରେଇ ପାରିଲିନି ! କାରଣ ମୁଁ ତାକୁ କଦାପି ଦେଖାଇ ପାରିବିନି ଗଣେଶଙ୍କ ଦୁଧ ପିଆ କାଣ୍ଡ; ଭାଣ୍ଡ ରହସ୍ୟ । ମାତ୍ର ତିନୋଟି ଦିନରେ ଯାହା ହୋଇଗଲା ସମାପ୍ତ !

ସାହିତ୍ୟ ଶବ୍ଦର ନିର୍ମାଲ୍ୟ । ନୁହେଁ ଗୁମ୍‌ସୁମ୍ ଶୁନ୍‌ଶାନ୍ । ବରଂ ଅମୃତମୟ କୋଳାହଳ । 'ମୟୂରାଷ୍ଟାକ'ର ସୁମଧୁର ଧ୍ୱନି କବି ମୟୂରଙ୍କୁ କରିଥିଲା ନବ ପଲ୍ଲବିତ ! କୁଷ୍ଠ ପୀଡ଼ିତ ବିଗଳିତାଙ୍ଗ ହୋଇଯାଇଥିଲା ସୁସ୍ଥ । ପ୍ରବଳ ପରାକ୍ରମୀ ଯୁବକକୁ ଶବ୍ଦ-ଧ୍ୱନି ବି କରିଦେଇ ପାରେ ଅର୍ଦ୍ଧମୃତ ! ଅସହ୍ୟ କଥା ଶୁଣି ଭାବ ପ୍ରବଣ ମଣିଷ ହୋଇଯାଇଥାଆନ୍ତି ପାଗଳ !

ସେ ଶବ୍ଦ-ଧ୍ୱନି ମହାକାଳୀ; ଭୟାନକ ନଗ୍ନ ନରମୁଣ୍ଡମାଳିନୀ; ଶିବ(କଲ୍ୟାଣ)କୁ ଏକ ପଦରେ ଦଳିନୀ । ଅମୃତମୟୀ ପୁଲକ ଦାୟିନୀ ବାଣୀ ସରସ୍ୱତୀ ! ଅର୍ଥ ପ୍ରଦାୟନୀ ସ୍ମିତହାସିନୀ ଧ୍ୱନି ଲକ୍ଷ୍ମୀ ! ଏମାନଙ୍କୁ ଏ' କଣ ଚିହ୍ନିନି ? ଆଣ୍ଡେରସନ୍ ଏମାନଙ୍କୁ ଜାଣିବେ କେମିତି ? ଏମାନେ ସବୁ ହୋସେନ୍‌ର ଛବି । ସିଏ ଆଙ୍କିଯାଏ । ବ୍ଲାକ୍‌ବୋର୍ଡରେ କଷା ଅଙ୍କପରି କଳା ବୋଲି ଡଷ୍ଟରରେ ଲିଭେଇ ପକାଏ । କାନ୍ଥସାରା ଧଳା କାଗଜ ବିଛେଇ ଯାଏ; ଠାଏ ଲେଖି ଦିଏ 'ଶ୍ୱେତାମ୍ବରୀ'; ତା' ଆର୍ଟ ପ୍ରଦର୍ଶନୀ ।

କି ବହି ଲେଖୁଛନ୍ତି ଆପଣ; ସେଇଟାକୁ ମୁଁ ଚିରିଦେଲି ? ବହିକୁ କେହି କ'ଣ ଚିରେ; ଚିରାଯାଏ ପୁଳାଏ ବାଜେ କାଗଜ !

ଜୟନ୍ତୀ, ତୁମେ ମୋ ସବୁ ଚିଠି ଚିରିଦେବ ।

ତୁମକୁ ବାର୍ତ୍ତା ଦେବା ସେ ଚିଠି ଗୁଡ଼ିକର କାମ । କାମ ସରିଗଲେ ବାଜେ କାଗଜ କାହିଁକି ସାଇତାଯିବ ? ମୁଁ ସଂଦେହର ଅଂଧାର ଭିତରେ ପହଁରୁଛି; ତୁମେ ତ ସାଇତିଚ ମତେ ତୁମ ମନ ମଂଦିର ଭିତରେ; ମୋ ଚିଠିଗୁଡ଼ା କାହିଁକି ଆଉ ସାଇତିବ ?

ଡାଳଟିଏ ପରି ମୁଁ ଭାଙ୍ଗି ପଡୁଛି ।

ଓଠରେ ଭର୍ତ୍ତି ପ୍ରତୀକ୍ଷାରେ ଚହଚହ ଶୋଷ, କେବେ ତୁମେ ଚିଠି ପହଂଚିବ, କେବେ ? ତୁମ ଚିଠି ପହଂଚିଗଲେ ମୋ ପାଖରେ ତୁମେ ପହଂଚି ଗଲା ପରି ଲାଗେ । ଅସହ୍ୟ ଉତ୍କଣ୍ଠାରେ ତୁମ ଚିଠିକୁ ଛାତି ପକେଟରେ ଛପାଇ ରଖେ । ତୁମ ଚିଠି ଶୁଣେ ମୋ ହୃଦୟର ଶବ୍ଦ । ପ୍ରତିଟି ଧକ୍ ଧକ୍‌ରେ ତୁମ ନାଁ; ଜୟନ୍ତୀ, ଜୟନ୍ତୀ..... ପ୍ରିୟତମା ମୋ; ସବୁ ସ୍ପନ୍ଦନ ସାରା ଯେମିତି ରାମନାମ ମନ୍ତ୍ର କିଏ ବୋଲି ଦେଇଛି !

କି କୁତୁବୁତୁ ସ୍ୱପ୍ନ !

ସ୍ୱପ୍ନ କେତେବେଳେ ସତ ?

ସେଇଥି ପାଇଁ ଲେଖିଚି 'ମୋ ଆର୍ଟ ମୋ ଜୟନ୍ତୀ, ସିଏ ରକ୍ତମାଂସର ନୁହେଁ ମୂର୍ତ୍ତି' ।

.... ତଥାପି ଜୟନ୍ତୀ ଲେଖିଚି ତା'ନିମନ୍ତ୍ରଣ; 'ଅଳନ୍ଧୁଲଗା ମୋ ଗାଁକୁ ଆସିବ, ତମକୁ ମୋ ରାଣ' ।

ମୁଗ୍‌ଦାଲିନୀ ଈଶ୍ୱରଙ୍କ ସପକ୍ଷ ଅପେକ୍ଷା କୁମାରୀ ଅଗ୍ନେସ୍‌ଙ୍କ ପ୍ରତି ଅଧିକ ଆକୃଷ୍ଟ କରିଛି ଦୃଷ୍ଟି । ଯାହାକୁ କହନ୍ତି 'ଅଶ୍ଳୀଳ' ସେଇ ସଇତାନ୍ ନିଜେ ହିଁ ତା' ପାଇଁ ଈଶ୍ୱର ! କାରଣ ସଇତାନ୍ ଅଟେ ଜ୍ଞାନ ଏବଂ ଈଶ୍ୱର ସଂଜ୍ଞାଦ୍ୱାରା ନିର୍ଣ୍ଣିତ ଜ୍ଞାନ !

କିଏ ସେ ସନ୍ୟାସୀ; ପଶୁପରି ଦିଶୁଚି ! ତା' ଓଠରେ ନିଜର ଭାଷା ନାହିଁ କେଉଁ ବାଇବେଲ୍, ପୁରାଣ ଓ ଉପନିଷଦର ସାଇତା ପୁରୁଣା ଭାଷା କିଛି କହୁଚି । ତୁମେ ପ୍ରଜ୍ଞାକୁ

କର ନୂଆ । ଭଲ ପାଇବାର କ୍ଷତ ଉପରେ ଅଶ୍ରୁ ଢ଼ାଳିବା ଶିଖ । ବଂଦ କର ମିଛକାଂଦ, ମୁର୍ଖ ଗପ; ଫିଙ୍ଗି ଦିଅ ଚାରିକଣିଆ ସେ ପୁସ୍ତକ ଗୁଡ଼ାକ । ସତ ସତିଆ ବଂଚିବା ଶିଖ ।

ମୋ ଜୀବନ ? ଏକ ମୃତ୍ୟୁ ଅଟେ । ମୃତ୍ୟୁକୁ ତୁମେ ଡରୁଚ ? ଭଙ୍ଗୀ, ତୁମେ ଥରୁଚ !

ଏକମାତ୍ର, ପଶୁକୁ ଶୀଘ୍ର ଅଧିକ ଜାଗ୍ରତ କରିପାରେ ପ୍ଲେଜର୍ ନୁହେଁ ପେନ୍ ! ଏ ଭିତରୁ ଗର୍ବର ସାପ ହଠାତ୍ ଛାଡ଼ିଲା ଫୁତ୍କାର ! କାହିଁକି ? କଂଚିମାଳା ନିଜ ଅହଂକାରକୁ କ୍ଷତାକ୍ତ କରୁଛି ! ନଖରେ ରାଂପୁଡ଼ି ଛିଣ୍ଡାଇ ପକାଉଛି ଶ୍ରୀକୃଷ୍ଣକୁ ! ଦୁଗ୍ଧରେ ଅଭିଷିକ୍ତ ହେଉଥିବା ନବନୀତ ମାଜଣାରେ ଚିକ୍କଣ ଶିବ ଲିଙ୍ଗକୁ ଛିଣ୍ଡେଇ କ୍ଷତାକ୍ତ କରି ଦେଉଛି ତା' ପାପୁଲି !

ତୁ ତ ଅସରପା ହୋଇ ଯାଇଥିବା ଗ୍ରେଗୋରି; ତୁ କେମିତି ଜାଣିବୁ ପ୍ରଣୟ ପ୍ରବେଶ କରେ ଚକ୍ଷୁବାଟେ ।

ଖ୍ରୀଷ୍ଟ ବଢ଼େଇର ପୁଅଟେ । ମୋଣ୍ଟ ପିଲେର୍‌ରେ ପଢ଼ିଥିଲେ, ଲ' ଏବଂ ଔଷଧ ଅଧ୍ୟୟନ କରିଥିଲେ ପାରିସ୍‌ଠି । ଜାଣିଚୁଟି ?

ଭଙ୍ଗୀ ପଚାରିଲେ କଂଚିମାଳାକୁ; ତୁମେ ଖୁସି ହୋଇଚ ତ ?

'ପ୍ରଚୁର ।' କହିଲା କଂଚିମାଳା ।

'ତେବେ ଏଇ ତା' ହେଲେ ଜୀବନ ? ଏହାର ପ୍ରୟୋଜନ ଅଛି ଆହୁରି !'

'ହଁ !' କହିଲା କଂଚିମାଳା ।

'ମୋର ଆନ୍ତରିକ ଇଚ୍ଛା କ'ଣ ଜାଣ ? ତମୁକୁ ଭଲଭାବରେ ବାରଂବାର... । ସତେରେ ଆଜି ତୁମକୁ ମୋର ଖୁବ୍ ପ୍ରୟୋଜନ ! କୌଣସି କଥାର ବଂଧକ ତୁମଠୁ ମୁଁ ମାନିବାକୁ ନାରାଜ ।

'ଏ ଗାଡ଼ି ସାଇଡ୍ କର । ଟିକିଏ କରକୁ ରଖ ।'

ଡ୍ରୋବ୍ ଖୋଲି ପଦାକୁ ବାହାରି ଆସିଲା, ଏ' ମାଡ଼ିଚାଲିଲା ରାସ୍ତାକରକୁ ।

ଏକ ?

ଦଉଡ଼ିର ପ୍ରାନ୍ତ କ'ଣ ଗୋଟାଏ ପଦାର୍ଥ ?

ଏ ରୋପସ୍ ଇଏଣ୍ଡ ଉଡ଼୍ଣ୍ଡ୍ ବି ଦି ଥିଙ୍ଗ୍ !

ମଣିଷ ଭଲପାଏ ମାଂସକୁ । ତାର ସ୍ୱାଦ ଓ ସୌରଭକୁ । ପ୍ରଶ୍ୱାସ ଢରିଆରେ ମୃତ୍ୟୁର ପାଟି ଭିତରୁ ଯେମିତି ମୁଁ ବାରିପାରୁଛି ଅସ୍ଥିର ବାସ୍ନା ! ଓଃ, ହାଡ଼ର ବାସ୍ନା କି ଉତ୍କଟ ! ମାଂସ ମିଳେଇ ଯିବ ଉତ୍ତେଜନାର ପ୍ରେସର କୁକର୍‌ରେ । ଭଙ୍ଗୁର ତମ ହାଡ଼ ଯଦି ଫାଟିଯାଏ, ଗୁଣ୍ଡ ଗୁଣ୍ଡ ହୋଇ ଯାଏ ମୋର ଗୁରୁ ଓ ଅତି ଭଦ୍ର ମୁଠା ତଳେ ? ଦାୟୀ ହେବି ମୁଁ ? ତୁମେ ଦାୟୀ କରିବନି ନିଜକୁ କିଂବା ସମୟକୁ ?

କଂଚିମାଳାର କୁଚ ହଳକ ଗୋଟାଏ ଖ୍ରୀଷ୍ଟିୟାନ କ୍ରୀତଦାସ ପରି ସୁଂଦର ବଂଧା ହୋଇଥିଲା ତା' ଛାତିରେ । ତାକୁ ବଂଧନ ଯାତନାରୁ ମୁକ୍ତି ଦେବକୁ ପଛ ସିଟ୍‌ରେ ବସି ଭଞ୍ଜୀ ବଢ଼ାଇଲେ ହାତ । ପାପୁଲି ଥରୁ ଥିଲା କାଠପିତୁଳା ନଚେଇଲା ଭଳି ।

କଂଚିମାଳା ଭଞ୍ଜୀଙ୍କୁ ଗୋଲାପ କୁଣ୍ଡରେ ଡୁବେଇ ଦେଇଛି !

ପବନରେ ମୁହଁ ଉପରକୁ ଉଡ଼ି ଆସୁଥିବା କେତୋଟି ଦୀର୍ଘ ଦରଦର ପକ୍ୱ କେଶକୁ ଘନିଷ୍ଠ ଭାବରେ ସିଏ ଟିପରେ ଟେକି ଦେଲା ଭଞ୍ଜୀଙ୍କ ମଥା ଉପରକୁ । ଥରଥର ଗୋଟେ ହାତକୁ ଭଞ୍ଜୀ ଖସେଇ ନେଲେ ତା ପିଠି ଦେଇ ପିଚା ତଳକୁ ।

ଡ୍ରାଇଭର୍ ମିରର୍ ଭିତରେ କଣେଇ କଣେଇ ଅନଉଚି !

ଚେରୀ ନା' ଚୁଇଂଗମ୍; ଅଠାଅଠା ହୋଇଗଲା ଜିଭ ! କଂଚିମାଳା ତାଙ୍କ ବାହୁରେ ତା ସ୍ତନାଗ୍ରକୁ ଚାପି ଦେଲା । ଓଃ କି ବର୍ଚ୍ଛା ମୂନ !

ପ୍ରେମ ଏକ ଗିବେଲ୍ ଇଲନେସ୍ । ଏହାର ଚିକିତ୍ସା ରହିଛି ଏହାରି ଭିତରେ ! ପ୍ରେମ ରୋଗୀ କେବେ ଆରୋଗ୍ୟ ହେବାକୁ ଚାହେଁନା । ଯିଏ ପ୍ରଣୟ ଅସୁସ୍ଥ ସିଏ ଭଲ ହେବା ପ୍ରତି ବିମୁଖ । ଈଶ୍ୱର ହିଁ ଜାଣନ୍ତି; ସେ ରୋଗୀ ତାରି ଭିତରେ ଛଟପଟ ହୋଇ ବଂଚି ରହିବାକୁ ଚାହେଁ କେଜାଣି କାହିଁକି ?

ଏ' ଅନେଇଲା । ଗାଢ଼ କାମପ୍ରବୃତ୍ତି ଭର୍ତ୍ତି ଗୋଟିଏ ଫୁଲର ଦୁଇଟି ପାଖୁଡ଼ାପରି କଂଚିମାଳାର ନାଲି ଓଠ ଦୁଇଟିକୁ । ଫାଳେବଡ଼ ଚେରୀକୁ ଦୁଇ ଚିରୁଡ଼ା କିଏ କରିଛି ?

କଂଚିମାଳା ଦୃଷ୍ଟିରେ ସୁମଧୁର ସଂଗୀତର ଉଷ୍ମତା ଭର୍ତ୍ତି, କିନ୍ତୁ ହୃଦୟ କାହିଁ ?

ଗୋଟାଏ ପୁରୁଣା ଭାଓଲିନ୍ ଦେହରେ କଂଚିମାଳା ଦେଇଛି ତା' ସ୍ପର୍ଶ; ସୃଷ୍ଟି ହେବ ସ୍ପଂଦନ ? ତାକୁ ପୁଣି କିଣିବେ ଦଳେ ଆନିମଲ୍ !

ଭଙ୍ଗୀ ପଚାରିଲେ ଏ'କୁ; ମୁଁ ସେକ୍ସପିୟରଙ୍କ କେଉଁ ନାଟକ ?

ଏ' କହିଲା; ସାର୍ ମୁଁ ଯୁକ୍ତଦୁଇରେ ଓଡ଼ିଆ ଅଧାପକ । ପଢ଼େନି କି ପଢ଼ାଏନି କିଛି ! କୋଡ଼ିଏ ହଜାର ଦେଇ ଚାକିରୀ ଖଣ୍ଡିକ ମୋ ବାପା କିଣେଇ ଦେଇଛି ।

ହସିଲା କଂଚିମାଳା ।

ଆପଣ 'ଓଥେଲୋ'; ଯେଉଁଠି Iago is right ।

ଜୟନ୍ତୀ, ତୁମେ ସେକ୍ସପିୟରଙ୍କ କେଉଁ ନାଟକ ?

ବରଂ ମୁଁ ଭାବୁଛି... ତୁମେ ତାଙ୍କ ସନେଟ ଗୁଚ୍ଛ ! ପ୍ରଣୟଭର୍ତ୍ତି ଗୋଛାଏ ଭିନ୍ନ ଭିନ୍ନ ବର୍ଣ୍ଣର ସୁବାସିତ ପୁଷ୍ପ ।

ମୋ ମୁହଁରେ ବୋଲି ହୋଇଯାଅ... ।

ଚକ୍ଷୁ ହରେଇବା ନଥିଲା ଅନେଇବା କୌଶଳ ।

ନାକଟା ବଙ୍କା ଦେଖାଗଲେ ଦୋଷ ନାକର ! ନୁହେଁ ନିଜ ଦୃଷ୍ଟିକୋଣର ?

ନୁହେଁ ନିଜ ଦୃଷ୍ଟିର କିମ୍ବା ଦର୍ପଣର !

କଂଚିମାଳା ପଚାରିଲା ସିଏ କେଉଁ ଫୁଲ ?

କଂଚିମାଳା ପଚାରିଲା ନାହିଁ ସିଏ କେଉଁ ପଶୁ ।

ପଚାରିଥିଲେ ଏ' କହିଥାନ୍ତା 'ଫେରିଟିସ୍'! ଏକ ପ୍ରକାର ନେଉଳ ଜାତୀୟ, ପୁରୁଷର ବିନା ସହବାସରେ ତା'ର ହୁଏ ମୃତ୍ୟୁ ।

ପ୍ରାଚୁର୍ଯ୍ୟ ଭିତରେ ତୁଳାପରି ବଢୁଥିବା ମହମର ଏଇ ଗେଡ଼ୀ ପେଣ୍ଡୀକୁ ଦେଖିଲେ ତୁମେ ଘୃଣା କରିପାରିବନି ଜୟନ୍ତୀ । ତା ଭିତରେ ଏତେ ଅଶୌଚ ଘରକରି ବସିଚି ତୁମେ ଜାଣିପାରିବନି । ପଦ୍ମଦଳ ପଙ୍କକୁ କିଏ ଦେଖେ ? ପଦ୍ମନାଡ଼ର କଣ୍ଟାକୁ କିଏ ଜାଣେ ?

ପଦ୍ମବନରେ ବିଷାକ୍ତ ନିଶ୍ୱାସ ଛାଡ଼ି ମୃଣାଳପରି ଗୁରେଇ ତୁରେଇ ହୋଇ ପଦ୍ମକେଶର ସୁବାସରେ ସନ୍ତରଣରତ ବିହ୍ୱଳ ନାଗର ଭୟାନକ ଚୋଟ କଥା କାହା ମନକୁ କି ଛୁଏଁ ? ଅଥଚ ସମସ୍ତେ ବିକଶିତ ପଦ୍ମରୂପ ମୁଗ୍ଧ, ବିହ୍ୱଳ । ଛଳଛଳ ।

କଂଚିମାଳା ତୁମପରି ନାରୀଟିଏ ତ ?

ବେଦ ଚାରି ଭାଗରେ ବିଭକ୍ତ । ନାରୀ ଚାରି ଭାଗରେ ବିଭକ୍ତ । କଂଚିମାଳା ଥିଲା ହସ୍ତିନୀ ଜାତୀୟା; ଚିର ଅତୃପ୍ତା ଶୁଚିସ୍ମିତା ଅଗ୍ନି !

ଯେତେ ଲାଭକଲେ ବି ନଦୀ, ପୁରେନା ସମୁଦ୍ରର ପେଟ, ଆଉ ତୁମେ ? ବୁନ୍ଦାଏ ମଧୁଜଳ; ଶାମୁକା ଗର୍ଭରେ ପତିତ ହେଲେ ଶାମୁକା ବୁଜିଦିଏ ତା' ଓଠ । ମନର ମଣିଷ ବ୍ୟତୀତ ଅନ୍ୟପୁରୁଷର ଛାଇ ଛୁଆଁକରିଦିଏ କୁଆଡ଼େ ତୁମ ହୃଦୟର ଲୁଗା । ସେଇଟା କ'ଣ ଏତେ ସଫା ?

ତୁମେ ସୀତାଙ୍କଠୁ ବଳେଇ ଗଲ ଜୟନ୍ତୀ ! ବିଂଶ ଶତକର ଶେଷ ଦଶଂଧିରେ ତୁମପରି ବୃତ୍ତ ପୁଣି ଅଛନ୍ତି ? ମୁଁ ତୁମ ଗାଁ କୁ ଯାଉଛି; ବୃତ୍ତସ୍ଥ ଜ୍ୟା ଟିଏ ମତେ ହେବାକୁ ଦେବନି ? ନା ବୃତ୍ତଠୁ ଅଲଗା ମୁଁ ରହିଯିବି ଗୋଟିଏ ସରଳ ରେଖା ! ଧୂ ଧୂ ମଧ୍ୟାହ୍ନ ପରି ଖାଲି ଠିଆ ହେବି ଏବଂ ତୁମକୁ ଅସହ୍ୟ ଉତାପରେ ସ୍ୱେଦସିକ୍ତ କରି ପୁଣି ଝାଉଁଳି ପଡ଼ିବି ! ମୋ ମଳା ଦେହକୁ ତୁମେ ଆଉ ସେଦିନ ପାଇବନି; ଦ୍ୱିପହରଟା ହୋଇଯିବ ଖାଲି ଗୋଟିଏ ଦୋଦଭୁଲା ସ୍ମୃତି । ଦୟା ଓ ଦରଦର ରଙ୍ଗକିଛି ତୂଳିରେ ତୋଳି ନେଇ ତୁମେ ଆଙ୍କିପାରିବ ତ ମୋ ମୁହଁଟିକି ? ତା' ବି କେତେଜଣ ପୁରୁଷଙ୍କ ଭାଗ୍ୟରେ ଜୁଟୁଛି ?



# ଗଡ୍ ଅଫ୍ ସ୍ମଲ୍‌ଥିଙ୍ଗସ୍..

ଚକ୍ରବାଳ ଶାନ୍ତ କୃଷ୍ଣତର ! ଉର୍ଦ୍ଧ୍ୱରେ ମେଘମାଳା ! ନିମ୍ନରେ ମାଟିର ଛାଇ । ମଝିରେ ମୁଁ ଗୋଟିଏ କ୍ରନିକ୍ ପ୍ରଶ୍ନ ! ଏକ ଅପାରଗ କୁହୁକ ମନର ଗପ ! ଗୁମ୍ଫାରେ ଭୋକର ଦିକ୍‌ଦିକ୍ ଜଳନ୍ତା ଆଖି; ତା' ଭିତରେ କ୍ଷମା ଛାଇ ଯାଇଛି ?

କାହିଁକି ଏତେ ଭୋକ ଲାଗୁଛି ? ଗୋଟାଏ ସୁବିସ୍ତୃତ କ୍ଷୁଧା; ଗଭୀର ଯେମିତି ଲୈଙ୍ଗିକ (ସେକ୍ସୁଆଲ) ? କାହିଁକି ପ୍ରକୃତି ମଣିଷ ଭିତରେ ରୋପି ଦେଇଛି ? ଯାହା ତା' କରିବା କଥା ତାହା କରି ଅର୍ଦ୍ଧେକ ଛାଡ଼ି ଯାଉଛି ?

ସେକ୍ସପିୟର, ଜନ୍‌ସନ୍ ଓ ବୁଢ଼ାମାଷ୍ଟ୍ରେ ବଂଚିଥିଲେ ଅର୍ଥରେ ! ଏହା ଥିଲା ଘୃଣ୍ୟପଥ । ଏହା ନଥିଲା ଅଧିକ ସ୍ୱାସ୍ଥ୍ୟପ୍ରଦ । 'ବିୟୁଟି' କହୁଥିଲେ କୀଟସ୍ ! ଗୋଟିଏ ଚକ୍ଷୁଷ କୌଶଳ ! ସେଇ କୌଶଳ ବାସ୍ତବବାଦୀଙ୍କ ବାସ୍ତବବାଦ; ଜାଣେ ମୁଁ ? ଭଟ୍ଟାଙ୍କ ହାତରେ ଫାପଲେଟ; ଏ' ଆଖିରେ ଗୋଟିଏ ଇସ୍ୟୁ; ତାହା ହେଲା 'ପ୍ରତ୍ୟାଖ୍ୟାତ ଆଶ୍ରୟ' ବିନା ଅର୍ଥରେ ! ପର୍ଣ୍ଣୋଗ୍ରାଫରମାନଙ୍କ ମୁଖର ହୋଟେଲ୍ ଆଣ୍ଡେରସନଙ୍କ ପାଇଁ ନିରାପଦ ସ୍ଥାନ ! ଡ଼ିନର୍ ଗେଷ୍ଟ୍ ଟେଲିଭିଜନ୍ ବ୍ୟକ୍ତିତ୍ୱମାନେ, ଜେମାଦେଈ ଓ କଂଚିମାଳାମାନଙ୍କପରି ଆମ୍ବ୍ୟୁଜ ଲେଡ଼ି ! ସେମାନଙ୍କ ଆରମ୍ଭ ସବୁବେଳେ ନୂତନ ! ସେମାନଙ୍କ ଯୌବନ ସବୁବେଳେ ଗୋଟାଏ ମାଗ୍ନିଫିସେଣ୍ଟ ଗପ !

ମୁଁ ଅନେଇଚି । ମୋ ବିଷୟବସ୍ତୁ ଏକ ସମୁଦ୍ର ! ବୋଧହୁଏ ବିଫଳ । କାରଣ ମୁଁ ଗ୍ରୁପିଙ୍ଗ୍ କରିଛି କନ୍‌ରଡ, ଜଏସ୍ ଓ ପ୍ରାଉଷ୍ଟଙ୍କ ସହିତ ! ମୋ ସାମ୍ନାରେ ଲମ୍ବି ଯାଉଛି ଗାଡ଼ି

ଲାଇଟ୍ ପରି ଖୁବ୍ ଲମ୍ବା, ତାହା କ୍ଷମା !

ତୁମେ ମତେ କ୍ଷମା କରିଚ ତ ଜୟନ୍ତୀ ?

ଦାନ୍ତେ ପାଇଥିଲେ କ୍ଷମା ? ମିଲିଟନ୍, ଟଲଷ୍ଟୟ, ଡିକେନ୍ସ, ବଲ୍‌ଜାକ..... ? ମୁଁ ମୃତ୍ୟୁ ପାଖାପାଖି ! ବୁକିଂ କ୍ଲର୍କ ଟିକେଟ କାଟୁଛି ! ଏ'ଟ୍ରେନ କ'ଣ ଯାଉଛି ମାଲଗୁଡ଼ି ? ଏହା କେମିଷ୍ଟ୍ରି ! ଏହାର ଓଜନ ଅଛି ! ଏହାର ଗଭୀରତା ଓ ବୟସ ଅଛି ! ମୁଁ ବୁଢ଼ା ହୋଇ ଯାଇଛି ? ମୋ ଆଶାର ସବୁ ପଂକ୍ତି ଏସିଡ୍ ସିକ୍ତ ! ମୋ ସ୍ପନ୍ଦନରେ ମୃତ୍ୟୁର ଅଚିହ୍ନାନାଟିକା କମ୍ପ୍ୟୁଟର ପରଦାରୁ ଦେଖୁଛି ସବୁଜିମାର ଘୋଷିତ ସ୍ୱାକ୍ଷର ?

ବେଳେ ବେଳେ ଇଛା ହୁଏ ଚାଖିବାକୁ ନିଜର କରେଜ୍ ! ପଚାରେ ଜନ୍‌ଡ଼ଶ୍‌ପାଶୋଙ୍କୁ; ଭିର୍ଜିନିଆଙ୍କ 'ଲାଇଟ୍‌ହାଉସ୍' ଏଇ କ'ଣ ଆଗରେ ? କେତେବାଟ ଇଗୋଠୁ ଇଦ୍, ଓ ହେନେରି ଗପଠୁ ମନୋଜଦାସଙ୍କ ଗପର ସ୍ଥିତାବସ୍ଥା ? କୀଟସ୍‌ଙ୍କୁ ଓଜନ କରାଗଲା ତନ୍‌ଙ୍କ ତ୍ଲେ ! ହୋଚିମିନ୍ କହିଲେ 'ନନ୍‌ସେନ୍ସ' ।

'ଏ' ପ୍ରକୃତରେ ତମେ ଗୋଟାଏ ବଡ଼ ନନ୍‌ସେନ୍ସ !

ଭଙ୍ଗୀଙ୍କ ଚଡ଼ିଟାକୁ କାଟି ନିଜ 'ଘର' ମ୍ୟୁଜିୟମରେ ସାଇତିଛି ! ଯେମିତି ଜଏସ୍ ପକେଟରେ ଲୁଚାଇ ରଖୁଥିଲେ ଖଣ୍ଡେ ଖଣ୍ଡେ ପ୍ୟାଣ୍ଟି, ଆଉ ଭଙ୍ଗୀ ?

କଂଚିମାଳାର ପଟେ ବ୍ୟବହୃତ ବ୍ରା' ରୁମାଲପରି ଭାଙ୍ଗିଭୁଙ୍ଗି ଜିନ୍ ପକେଟରେ ସାଇତିଛନ୍ତି ।

ଗୋଟାଏ କପ୍ ଭିତରେ କେତୋଟି ଲବଙ୍ଗ ଅଛି । ବେଳେବେଳେ ସେ ତହିଁରୁ ଗୋଟିଏ ଗୋଟିଏ ଲୁଚେଇ କାଢ଼ି ଚୁଚୁମନ୍ତି ।

.... କଂଚିମାଳାର ନିପଲ୍ ?

ମୁଁ ତୁମକୁ ବୁଝେଇ ପାରିଲିନି ଜୟନ୍ତୀ !

ମୁଁ ଗଣିତ ନୁହେଁ, ଜଣେ ମଣିଷ ! ମଣିଷକୁ ବୁଝିବ କେମିତି ? ସେ କ'ଣ ଏକ ବସ୍ତୁ ନୁହେଁ; ପରିବ୍ୟାପ୍ତ ନୀଳିମା !

ଫୁଲଟା ଖ୍ରୀଷ୍ଟଙ୍କ ଭଲପାଇବା ! ମୋ ଭଲ ପାଇବା ଝରଣାର କୁଳୁକୁଳୁ ଗାଉଣା ! ତା'ର କି ଅର୍ଥ ତୁମକୁ ମୁଁ ବୁଝାଇବି ପ୍ରିୟତମା ?

ପେନ୍‌ସିଲର ଗାରପରି ଶେଷକୁ ଜ୍ୟାମିତିର ସିଦ୍ଧାନ୍ତ ହେବ ଆମେ ପରସ୍ପରକୁ ଅତର୍କିତ ରୂପେ ଭୁଲି ଯିବାର କଫିନ୍‌ରେ ସାଇତିନେବା ? ପାରାଡ଼ାଇଚ୍ଚ ଲଷ୍ଟ ? ଲିସିଦାସ୍ ଅନ୍‌ପ୍ଲିଜାଣ୍ଟ ? ଇଲିୟଟ ଘୋଷଣା କରିବେ 'ହାମ୍‌ଲେଟ'ର ଶୈଳୀରେ ଜୀଇଛି ଭାବ ସଂବେଗ ! କଳାଟା ହୋମୋସେକ୍ସୁଆଲ୍ !

'ସୋଡମି ଓ୍ୱାଇ୍ ସେଲ୍‌ଡ଼ମଡ'- 'ଡ଼ୋରିଆନ୍ ଗ୍ରେ' ଲେଖି ବିରୋଧକଲେ ଓସ୍କାର ! ତମେ ଚପଳଛନ୍ଦାକୁ କୋଳରେ ବସାଇଥିଲ ? ଯେମିତି 'ବୋଣୀ'କୁ କୋଳଭିତରେ ପୁଷି ପରି ଓସ୍କାର ଢାକି ଧରନ୍ତି ? ଯାହା ପାଇଁ ଦୁଇଦୁଇଟା ମୋକଦ୍ଦମା ଓ ଜେଲ୍ ଯାଇଛନ୍ତି ? ତମେ କ'ଣ ପାଉଲ୍ ଭାଲେରି; ମେଡିକାଲ୍ ପରୀକ୍ଷା ପରେ ଜଣା ପଡ଼ିବ ର୍ୟାମ୍ବୋ ସହ ତମ ସଂପର୍କ...! ବାରମ୍ବାର ଚିକ୍କଣା ଗୋରା ଟୋକାଟାକୁ ତମେ କୋଳରେ ବସାଇଛ ! ନିଜ ଅତ୍ୟଧିକ କ୍ଷୁଧା ର୍ୟାମ୍ବୋ ରିଷ୍ଟକୁ କଲା କଣା ! ବିଚରା ବଂଚିଗଲା ! ନରହତ୍ୟା ଉଦ୍ୟମ ଅପରାଧରେ ଭାଲେରିଙ୍କୁ ହୋଇଗଲା ଦୁଇ ବର୍ଷ ସଜା !

ଜୟନ୍ତୀ, ତୁମେ ମୋ କୋଳକୁ ଆସ ! କୋଳ ହିଁ ଏକମାତ୍ର ବତ୍ରିଶ ସିଂହାସନ ଯେଉଁଠି ଥରେ ବସିଲେ ହୃଦୟ ଓ ମନସାରା ବିକଶି ଉଠେ ସୁଖର ସ୍ୱର୍ଗୀୟ କମଳ ! ସେ ସୁଖ ସ୍ମୃତି ଆଜୀବନ ଅମ୍ଳାନ !

'ମୋ କୋଳରେ ନ ବସିବ କାହିଁକି ? 'ଡସ୍ଟୟିଭସ୍କି'ଙ୍କ ଲାଜକୁଳା 'ଟିକି ହିରୋ' ଟିକୁ ପଚାରିଛି ଯୁବତୀ ମିସେସ୍‌ଟି ! ଆକର୍ଷଣୀୟ ଯାହା ରୂପ ଓ ଯୌବନର ତାଜ୍‌ମହଲ ଉପରେ ସମବେତ ସମସ୍ତଙ୍କ ଆଖି !

ତୃତୀୟ ଟ୍ରାଏଲ; ଓସ୍କାରଙ୍କୁ ହୋଇଗଲା ଦୁଇବର୍ଷ ଜେଲ୍ ! ହାର୍ଡିଲାବୋର୍ ଜେଲ୍ ଭିତରେ ପାଗଳ ହୋଇ ଲେଖିଲେ ଡି ପ୍ରୋଫାଉଣ୍ଡିଷ୍'। ଜେଲ୍ ଭୋଗପରେ ଫ୍ରାନ୍ସକୁ ଯାଇ ନିଜକୁ ରିଫର୍ମ କଲେ ଓସ୍କାର ! ମିଃ ଭଞ୍ଜୀ, ଆପଣ ମୋ ପ୍ରବନ୍ଧ ପଢ଼ି ନିଜକୁ ସଜାଡ଼ିଛନ୍ତି ? ଏ' ଆପଣଙ୍କୁ ମନା କରିଛି ନା ? କାରଣ ପ୍ରତ୍ୟେକ ଷ୍ଟାଇଲ୍ କୁଆଡ଼େ ଗୋଟିଏ ଗୋଟିଏ ବେଆଡ଼ା ?

କବି ଏର୍ଣ୍ଣେଷ୍ଟ ଡାଉସନ୍ ଓସ୍କାରଙ୍କ କ୍ଷୁଧା ପ୍ରଶମିତ ପାଇଁ ତାଙ୍କୁ ନେଇଗଲେ ପତିତାଳୟ ! ନିଜକୁ ଖୁବ୍ ବାଡ଼େଇ କଚାଡ଼ି ପତିତାଟିକୁ ବେଶ୍ ଦଳା ମକଚା କରି ସାରିବାପରେ ସିଏ କହିଲେ - 'ଇଟ୍ ଓ୍ୱାଇ୍ କୋଲ୍ଡ ମଟନ୍;' ଶୀତଳ ମାଂସ ! ବଡ଼ ଘୃଣା ଆସୁଛି; ବାସ୍ !

ମଣିଷକୁ ଓ ତା'ର ମନକୁ ଖିନ୍‌ଭିନ୍ କରି ବିଶ୍ଳେଷଣ କରିଥିବା ପ୍ରଥମ ପଣ୍ଡିତ ଜଣକ ସିଗ୍‌ମଣ୍ଡ ଫ୍ରଏଡ଼ ! ୧୯୩୩; ନାଜୀ ଆସିଲେ କ୍ଷମତାକୁ ଜାଳିଦେଲେ ତାଙ୍କ ରଚନାସବୁ ! କୁହାଗଲା ୟୁହୁଦୀ ପର୍ଣ୍ଣୋଗ୍ରାଫି; ପୋଡ଼, ପୋଡ଼ ସବୁ ! ଫ୍ରଏଡ୍ ଦିନକୁ ଟାଣୁଥିଲେ ସିଗରେଟ୍ ମାତ୍ର କୋଡ଼ିଏ ଖଣ୍ଡି; ଆଣ୍ଡେରସନ୍‌ଙ୍କପରି ! ଆଉ ଆପଣ ଦିନକୁ କେତୋଟି ?

ଡାଳିମ୍ବ ଦାନାପରି ଦାନ୍ତଗୁଡ଼ିକ, ପୋଟଳଚିରା ଆଖି, ଓଠରେ ଚହଚହ ହସ, ଲାଲ୍ ମାଢ଼ି; ଓଃ, ବେଙ୍କଡଳ କି ଗୋରା ! ମିନା ବଦଳି ଗଲାଣି ! ମିନା ? ଫ୍ରଏଡ୍‌ଙ୍କ ପ୍ରେମିକା । ତାଙ୍କ ନିଜ ଶାଳୀ !

ନିଜ ଅଭ୍ୟାସମାନଙ୍କୁ ଫ୍ରଏଡ୍ କେବେ ଆନାଲିସସ୍ କରିନାହାନ୍ତି ! କରିବେ କେମିତି ? ସିଗାରେଟ, ନିଶା, ଜୁଆ ଏବଂ ଏହା ବାଦ୍ ଗଲେ ଆଦିମନିଶା ମାଷ୍ଟରବେସନ୍ ଥିଲା ତାଙ୍କ ପ୍ରବାଳର ପ୍ରତିଷ୍ଠାରେ କୁହୁଡ଼ି ଢଙ୍କା !

ଜୟନ୍ତୀ, ତମେ ଗେଟେଙ୍କୁ ଜାଣିଚ ? ମାତ୍ର ଗୋଟିଏ ଚୁମା କାହା ମୁହଁରେ ମାରି ଦେଲେ ଥପ୍‌ଥପ୍ ହୋଇ କ୍ଷରିତ ହୋଇଯାଉଥିଲା ସାଇତା ଅତୃପ୍ତି ଓ ଅନନ୍ତ ପୁଲକ ଫୁଲପରି ତାଙ୍କ ଭିତରେ ହୋଇଯାଉଥିଲା ଜମା ! ତମ ମୁହଁ, ତମ ଓଠ, ତମ ପଲିଶ୍‌କରା ଗଣ୍ଡ ମୋର ଖୁବ୍ ମନେ ପଡୁଛି । ଧଳା କାଗଜ ପରି ମସୃଣ କି ଦାଗହୀନ ! ନିଜେ ମୁଁ ନିଜ ସଇତାନ ? ନିଜ ଇଡେନ୍‌ରୁ ନିଜେ ମୁଁ କରୁଛି ପଳାୟନ ? ତୁମ ଇଡେ଼ନ୍‌କୁ !

ତୁମର ଇଡେନ୍ ଅଛିତ ? ନା' ସେଠି ଗ୍ୟାଷ୍ଟିକ୍‌ର ଘା' ଓ ଜ୍ୱରର ତାତି ଭୁରୁଭୁରୁ ?

ଜୟନ୍ତୀ, ତୁମ ଅବଚେତନରେ ଲେଖା ଅଛିତ ସୁଖର ଠିକଣା !

ଶ୍ରାବଣ ଦେଇଛି ଚିଠି ? ଫଗୁଣ ତୁମ ମନର ତରୁରେ ମୋ ପ୍ରୀତିପତ୍ର ଲହରେଇ ଦେଇଛି, ପ୍ରିୟତମା ! ମୋ ଆଖିରେ ତୁମେ ଜ୍ୟୋଛନା; ମୁକୁଳା ମଳୟ, ମୋ ଶେଯରେ ହେବନି ଲଙ୍ଗଳା ?

ଭ୍ରମର ପାଇଁ ଫୁଟାଫୁଲ ପିନ୍ଧିଥାଏ କେଉଁ ବସନର ମେଖଳା ? ମୁଁ ମଳୟ; ଆଗୋ ମୋର ରୂପସୀ କଦମ୍ବ, ତୁମ ଗାଲର ହଳଦିଆ କାଗଜ ଉପରେ ବୋଳିଦେବି ମୋ ଓଠ ଚୁମାର ଘନନୀଳ ରଂଗ ! ଇନ୍ଦ୍ରଧନୁ ଓହ୍ଲେଇ ଆସିବ !

ଗେଟେଙ୍କ ପ୍ରଥମ ଉପନ୍ୟାସ 'ଦି ସରୋଜ୍ ଅଫ ୟଙ୍ଗ୍ ୱେର୍ଥର' ଯାହାକୁ ପଢ଼ି ସାରା ୟୁରୋପ ଉପଲବ୍ଧିକଲା 'ସୁଇସାଇଡ୍ ଫର ଲଭ୍' ଏକ ଫେଶନ୍ ! ଭଲ ପାଇବା ଓ ଆତ୍ମହତ୍ୟାର ବିଳାସ ସ୍ରଷ୍ଟା ଏଇ ଲୋକଟା ନିଜଠୁ ସାତ ବର୍ଷ ବଡ଼ ଜଣେ ବିଦୁଷୀ 'ଚାର୍ଲୋଟି' 'ଭନ୍ ଷ୍ଟୋନି'କୁ ଲେଖିଥିଲେ ଏକ ହଜାର ପାଞ୍ଚଶତ ଚିଠି । ଥରୁଟିଏବି ନାରୀଟିକୁ ଚୁମି ନାହାନ୍ତି !

ଜୟନ୍ତୀ, ତୁମ ପାଖକୁ ମୁଁ ମୋଟ ଲେଖିଚି କେତୋଟି ଚିଠି ?

ମୋ ଭଲ ପାଇବା କେଉଁପରି ଘୃଣିତ ? କେମିତି ହେଲା ଏତେ ତିକ୍ତ, ଏହା କରାଇଛି ମୋ ବୟସ ? ସଂସାରର କମାର ହାତ ? ସଂସାରଟା କ'ଣ ଗର୍କୀଙ୍କ ଭ୍ଲାସଭର ? ଖାଲି ମଦ୍ୟପାନ ଓ ପିଟାପିଟି ତା' କାମ ?

ତୁମ ଗାଁ ନଈ ଜଳ ଏବେ ଗୋଳିଆ ! ବାଦାମ ଅମଳର ଧୂଳି ଚାରିଆଡ଼ ! ଗୋଳିଆଜଳ ତଳେ ଯେଉଁ ସିକତା ଶେଯଥାଏ ତାର ରଂଗ ତୁମେ ଦେଖିଛ ? ଗୋଟାଏ ପାର୍ଲିଆମେଣ୍ଟପରି ଦେଖାଯାଏ ମଣିଷର ମନ ! ତୁମ ଚିଠି ଅତ୍ୟନ୍ତ ସୀମିତ; ତୁମକୁ ଚିଠି ଲେଖିଲାବେଳେ ନିଜକୁ ମୁଁ ମନେକରେ ଜଣେ ସତର୍କ କ୍ଲର୍କ ! ଶବ୍ଦଟିଏ ଅସଜଡ଼ା ହୋଇ ନୋଟ୍‌ସିଟ୍‌ରେ ଯଦି ଖସି ଯାଏ ବଦଳିଯିବ ମେଟାଫର୍ ! ଚର୍ଚ୍ଚ ଟା ହୋଇଯିବ ଘର !! କି ଡର ! ମୁଁ ଫେରିଆସେ ପୂର୍ବସ୍ଥିତିକୁ । ଭ୍ରମର ଛୁଇଁବନି ଫୁଲକୁ ? ପ୍ରକଟ ବାଗ୍ମିତା ହୁଏ ସଂଶୋଧିତ । ଲେଖା ଚିଠି ଚିରିଦିଏ ପୁଣି ଆଉଥରେ ପୁନର୍ବିଚାରିତ ହ୍ରାସକରଣ ବାକ୍ୟ କେତୋଟି ପଠାଇ ଦିଏ ଡାକରେ ! ତୁମେ ପାଅ ଏକ ଅଲଗା ସଂସ୍କରଣ । ସେଇଟା କ'ଣ ମୋ ପ୍ରେମ ? ସେଇଟା କ'ଣ ମୋ ଫୁଲ ? ତାକୁ ତୁମ କବରୀରେ ଖୋସିହେବ ? ମୋ ଫୁଲର ପାଖୁଡାରେ ତୁମେ କେବେ ଥାପିଚ ତୁମ ଓଠ ? ତୁମ ଓଠ ସ୍ୱୀକୃତିର ପରାଗରେ କୋଇଲା ପରି ଉଜ୍ଜଳ କଳାକଳା ଡୋଳା ଦୁଇଟିଙ୍କୁ କିଏ ବାର୍ତ୍ତାଟିଏ ଦେବ ? ଦିଅ, ଦିଅନା ସେ ଗୋଲାପ କଢ଼ ! ଲୋହିତ କିଶଳୟ ଯୋଡ଼ି ଚାପି ଧରି ତାକୁ ଚୁମିଯିବ ?

ଆଃ, ରାଣୀ ମୋର !

ପ୍ରେମର ସଂଜ୍ଞା କ'ଣରେ ବାଳିକା ? କେତେ ଏଠୁ ସ୍ୱର୍ଗର ଦୂରତା ? କେତେ ଉଚ୍ଚ ? ସମୁଦ୍ରର ଗୋଲେଇରେ ସଂସାରକୁ ବୁଡାଇ ଦିଅରେ ପ୍ରିୟତମା !

ଏଠି ଦିନରାତି କି ସକାଳ ନଥାଉ !

'ସାକ୍ରିଡ୍ ଜର୍ଣ୍ଣିଂ ଅଫ୍ ଦି ପିସ୍‌ଫୁଲ୍ ୱାରିଅର' ଦାନ୍ ଉଇଲିମ୍ୟାନ୍‌ଙ୍କ ବହିଟି ଅତ୍ୟନ୍ତ ପ୍ରଜ୍ଞାଦୀପ୍ତ । ଜାଣିବା ଓ କରିବା ମଝିରେ ଥିବା ଗ୍ୟାପ୍-ବହିର ବିଷୟବସ୍ତୁ । ହତାଶ ଚରିତ୍ର ପୁନଃ ଆବିଷ୍କୃତ କରୁଛି ଜୀବନର ଉଦ୍ଦେଶ୍ୟ ଓ ବଂଚିବାର ଗୁରୁତ୍ୱ । ପୁଣି ସିଏ ଗୃହସ୍ଥାଶ୍ରମଠି ପହଂଚି ଯାଉଛି; ବୁଡି ଯାଉଛି ବିପୁଳ ଶାନ୍ତିର ସୁବାସିତ କୁଣ୍ଡରେ !

'ଗଡ୍ ଅଫ୍ ସ୍ମଲଥିଙ୍ଗସ୍ !'

ଅରୁଂଧତୀ ରାୟଙ୍କ ବିରୁଦ୍ଧରେ କେରଳ ପ୍ରଦେଶସ୍ଥ ଏକ କୋର୍ଟରେ ଅଶ୍ଳୀଳ ଅଭିଯୁକ୍ତ ପୁସ୍ତକ ! ଅଥଚ ବହିଟି ଯୁବତୀଟିକୁ ରଏଲଟି ଯାହା ଦେଇଛି ତାହା ବିସ୍ମୟୋଦ୍ଦୀପକ ! ବହି ନୁହେଁ, ଏଇଟା ରାଜବଧୁ ଡାଇନାଙ୍କ ଗାଉନ ! ଚୌତ୍ରିଶ ହଜାର ପାଞ୍ଚଶତ ଟଙ୍କାରେ ହୁଏ ନିୟୁର୍କରେ ନିଲାମ ! ଠିକ୍ ସେମିତି ?

..... ବୁଢ଼ା ମାଷ୍ଟ୍ରେଙ୍କ କଥା ମନେ ପଡୁଚି !

ଦୀର୍ଘ ତିରିଶ ବର୍ଷ ବା ତା' ଠୁ କିଛି ଅଧିକ ଗୋଲାମୀ କଲା ପରେ ନେଲେ ଅବସର ! ପେନ୍‌ସନ୍ ଓ ଘରଭଡ଼ା; ଚଳି ହେଲାନି ! ପୁଣି କଲେ ତୋଷାମଦ, କରଣିଆ ରାଜନୀତି ! ଛବିଶ ବର୍ଷିଆ ଯୁବକକୁ ଯେଉଁଠି ମିଳୁନାହିଁ ଚାକିରୀ, ଷାଠିଏ ବର୍ଷିଆ ବୁଢ଼ା ମାଷ୍ଟ୍ରଙ୍କୁ ମିଳିଲା ନିଯୁକ୍ତି ! ଯିବା ଆସିବାକୁ ଗାଡ଼ି, ଭତ୍ତା ଓ ଦରମା ।

ଏ ଦେଶଟା କ'ଣ ହେଇଗଲା ?

ବୁଢ଼ା ମାଷ୍ଟ୍ରେ ଲେଖନ୍ତି ଗୋଟିଏ ସାପ୍ତାହିକରେ ଦୁଇସ୍ତମ୍ଭ ! ପାରିଶ୍ରମିକ ? ନ ପଚାରିଲେ ଭଲହେବ !

.... ବୋଧହୁଏ ମାର୍ଚ୍ଚ ଶେଷ; 'ସଣ୍ଡେ' ସାପ୍ତାହିକ ପ୍ରଚ୍ଛଦ ଗପ ଜିନ୍ ଓ ଗଂଜି ପିନ୍ଧା ଅରୁନ୍ଧତୀ ଗଡ୍ ଅଫ୍ ସ୍ମଲଥିଙ୍କ୍ସ ହେଲା ପ୍ରସାରିତ ! ବହି ମୋଟେ ଓଡ଼ିଶା ପବନରୁ ନେଇନି

ପ୍ରଶ୍ୱାସ, ଦେଖିନି ଭୂଗୋଳ, ବୁଢା ମାଷ୍ଟ୍ରେ ଦୁଇ ସପ୍ତାହପରେ ତାଙ୍କ ସ୍ତମ୍ଭରେ ଲେଖିଗଲେ ନେଫେଡ୍ର୍ଟାର ନାଲିନାଲି ସ୍ୱାଦ । ଓଃ; କି ବଢିଆ, ଯେମିତି ଓଠ ! ଗାଈ ବିଷୟରେ ପ୍ରବନ୍ଧ ।

ଆପଣ ଜଙ୍ଗଲ ସହିତ ଘନିଷ୍ଠ, ମାତ୍ର ଗଛ ଦେଖି ନାହାନ୍ତି ।

କଲେଜ ଛକ, ବାଙ୍କା ବଜାର, ବିଜେବି ନଗର ଓ ବାଣୀ ବିହାର; ଅଛି କେଉଁଠି ଗୋଟେ ଚଂଦନ ଗଛ ? ରାଣ୍ଡୀ ଓ ଗୋଦରାଙ୍କୁ କ'ଣ କୁହାଯାଏ ମଣିଷ ? ଅବଶ୍ୟ କ୍ୱଚିତ୍ ଇଂଦିରା ଏମାନଙ୍କ ଭିତରେ ଥା'ନ୍ତି ! ଆଇ' ମ ସରି ! ମାର୍ଚ୍ଚ ୧୯, ୧୯୯୭ । ସାପ୍ତାହିକ 'ଆଉଟ୍‌ଲୁକ୍'... ! ପଦ୍ମରାଓ ସୁନ୍ଦରଜୀ ନିୟୁର୍କରୁ ଫଟୋ ନେଇଛି- 'ସ୍ନେକ୍ସ ଏଣ୍ଡ୍ ଲାଡ୍‌ର୍ସ'; କଲିକତା ମୈଦାନ ଓ ସେଣ୍ଟ୍ରାଲ ପାର୍କକୁ ଭଲ ପାଉଥିବା ଜଣେ ମହିଳାର ମସ୍ତିଷ୍କ ! ଏକ ପ୍ରବନ୍ଧ ସଂଚୟନ ! ସିଏ ଲେଖିଛନ୍ତି ଯେଣୁ ଅଲିଣ୍ଡେ ଓ ମାର୍କ୍ୱେଜ୍ ପ୍ରଭୃତି ଲେଖୁଛନ୍ତି ଦକ୍ଷିଣ ଆମେରିକାର ଇତିହାସ !

ତାଙ୍କର ନ ଥିଲା କିଛି ମୌଳିକ ଉଦ୍ଦେଶ୍ୟ ?

ମାର୍ଚ୍ଚ ଶେଷକୁ ବହିଟି ଆସିବାକୁ ଥିଲା ମାର୍କେଟ ! ଆସିଲା ! ବିଶାଳ ହସ୍ତୀର ଲାଂଜ ତଳ ପବନ ?

ବୁଢ଼ା ମାଷ୍ଟ୍ରେ ଚମକି ପଡ଼ିଲେ ! ସିଏ ଆମ ଓଡ଼ିଆ ଝିଅ ତ ! ଆମରି କରଣ ! ଲେଖିଲେ ।

ମାତ୍ର ମୁଁ ? ପ୍ରେମରେ ଉବ୍‌ଟୁବ୍ । ତୁମର କେତେ ପାଖକୁ ଚାଲି ଆସିଲିଣି ଜୟନ୍ତୀ ! ନାରୀ ଦେହ ଫୁଲ ପାଖୁଡ଼ା ! କେଉଁଠି ଚେନାଏ ସ୍ଥାନ ଅଛି ଏମିତି' ଯେଉଁଠି ସେକ୍ସ ତା' ମହୁଫେଣା ରଚନାରୁ ବାଦ ନେଇଛି ? ମହୁ ମୁଁ ନିଜ ପାତ୍ରକୁ ଚିପୁଡ଼ି ନେବାକୁ ବଢ଼ାଇଛି ପାପୁଲି !

ଜୟନ୍ତୀକୁ ମୁଁ ସ୍ପର୍ଶ କରିବାକୁ ଚାହୁଁଛି ! ତା ଛାତି, ପେଟ, ପିଚା, କଟି, ଜଂଘ, ଆଖି, ଓଠ, ଜରାୟୁ ଓ ସ୍ତନାଗ୍ର..... ତା' ସାରା ଚର୍ମ ସ୍ପର୍ଶର ପାଦୁକ ମତେ କରିଦେବ ପବିତ୍ର ନୈବେଦ୍ୟ ! ଅଭିଳାଷର ମହାବେଦୀରେ ନିବେଦିତ ଅର୍ଘ୍ୟ; ମଣୋହି ପ୍ରସାଦ ! କେତେଜଣ ପୁରୁଷଙ୍କୁ ମିଳେ ଏ ସୌଭାଗ୍ୟ ?

ତୁମ ଦେହ ଚଂଦ୍ରାଲୋକ ! ମୁଁ ତୁମ ମିଳନ ତୃଷ୍ଣାରେ ଅସୁସ୍ଥ ! ଆଲିଙ୍ଗନ ଭିତରେ ତୁମକୁ ସାଇତିବି ! କୋଇଲିର କୁହୁ ଧକକ୍କାରେ ତୁମେ ଉଲ୍ଲସି ପଡ଼ିବ ! ତୁମ ସାରା ଦେହ ବୋଳି ହୋଇ ଯିବ ଚଂଦନ ମୋ କୋଳ ଭିତରେ ସାଇତା ଚାହାଣୀକୁ ମୁଠେଇ ପକେଇଲେ । କବିତା ହୋଇଯିବ ଖ୍ରୀଷ୍ଟିଆନ୍ ! ପୂନେଇଁର ପୀତ ଜ୍ୱାଳାରେ ବଦଳିଯିବ ମସୀକାଳି ଉଆଁସ !!

ମହମ୍ମଦ ମତବାଦୀ କହନ୍ତି 'ଈଶ୍ୱର ହିଁ ଈଶ୍ୱର'; ଠିକ୍ ସେମିତି କଳା ହିଁ କଳା ! ବସ୍ତୁଟି କ'ଣ ଆମେ ବିଚାର କରୁ ତାକୁ ପରୀକ୍ଷା କରି । ତାର ସତ୍ୟ ଓ ବ୍ୟବହାର୍ଯ୍ୟ ଗୁଣ ଆମେ ପରଖୁ । ଚୁମ୍ବନ ଅର୍ଥ କାହାକୁ ଚୁମା ଦେବା ନୁହେଁ; ଏହା ଏକ ଶବ୍ଦମାତ୍ର ! 'ଚୁମ୍ବନ' ଶବ୍ଦଟି ଶୁଣିଲେ ଜୟନ୍ତୀ ଚମକେ । ତା' ଓଠରେ ନେସି ଦେଲା କି କିଏ ? ତା' ସତୀତ୍ୱର ବ୍ଲାଉଜରୁ ଫିଟେଇଦେଲା ବୋତାମ ? ଅସହ୍ୟ ଜ୍ୱାଳାରେ ହୁଏ ଛଟପଟ ! ଯେମିତି ମାରା ହୋଇଗଲା ତୁଳସୀ ! ତୁଳସୀ ମାରାହୁଏ ?

ଗୋମୟ ମଳ ?

ଗଙ୍ଗା ହୁଏ ଦୂଷିତା ? ମହାପ୍ରସାଦ/ନିର୍ମାଲ୍ୟ ହୁଏ ମାରା ? ନାରୀତ ସଦା ଶୁଚିସ୍ମିତା ! ସଂସାର ସୃଷ୍ଟି କରିବା ସବୁ ସ୍ତ୍ରୀଲିଙ୍ଗୀ ଜୀବଙ୍କ ଏକମାତ୍ର ଧର୍ମ ! ମାରା କେମିତି ହେବ ?

ଜୟନ୍ତୀ, ତୁମେ ଅସୁଖୀ ? ସୁଖ ପାଇଁ ମଣିଷ ଜନ୍ମ ହୋଇନାହିଁ । ତା'ଜନ୍ମଟା ଗୋଟେ ଯନ୍ତ୍ରଣା ! କେମିତି ହେବ ତୁମେ ସୁଖୀ, ଶିଖ ଭଲ ପାଇବାର ବୃତ୍ତି ! ପ୍ରଣୟହିଁ ତୁମ ଭିତରେ ଜାଗ୍ରତ କରାଇବ କୁଣ୍ଡଳିନୀ ! ଇଡା ଓ ପିଙ୍ଗଳା ମିଳିତ ହୋଇ ହେଲେ ସୁଷମ୍ନା ତୁମେ ପାଇବ ସୁଖ ! ପ୍ରିୟତମା, ଖୋଲିଦିଅ ତୁମ ଦେହର ପୁସ୍ତକ ! ମୁଁ ଅନ୍ଧ । ମୋ ଟିପ ପଢ଼ିଯିବ ତୁମ ସ୍ନାୟୁସାରା ସାଇତା ସମସ୍ତ ଅକ୍ଷର !

'ଲଭ୍ ଇଜ୍ ପ୍ରମିଶ୍ ଅଫ୍ ହାପିନେସ୍ ! ଲଭ ଇଜ୍ ମିରାକ୍ଲେ ଅଫ୍ ଦି ସିଭିଲାଇଜେସନ୍;' ମନେ ପଡ଼ନ୍ତି ଷ୍ଟେଣ୍ଢଲ !

ପ୍ରିୟତମା ତୁମେ ଭଲପାଅ, ଭଲପାଅ ! ମତେ ନପାଇପାର; କିଛି ଯାଏ ଆସେ ନାହିଁ । ମାତ୍ର ଭଲପାଅ ! ନୂଆକ୍ରୀମ୍‌ପରି ଚିକକ୍ୱଣ ଓ ସୁବାସିତ ତୁମ ଚର୍ମରେ ନାସାକୁ ଏବଂ ଆଙ୍ଗୁଠିମାନଙ୍କୁ ପହଁରାଇବାକୁ ଦିଅ ! ମଳୟକୁ ଅନୁମତି ଦିଅ ତୁମ ଭିତରେ ଚିର୍‌ଚିରେଇ ଉଠିବ ଜୀବନ ! ଟଙ୍କାପରି ଟିପରେ ବଜେଇ ଶୁଣିବ ତୁମ ଜୀବନର ଠନ୍‌ଠନ୍ ସ୍ୱର ! ସୁଖର

ନିଦାପଣ-କେତେ ଅସଲ !!

ମୋର ଦୁଇଟି ଆଖି । ଗୋଟିଏ ଆଖିରେ ଦେଖୁଚି ତୁମର କମନୀୟ ନାରୀତ୍ୱ ଓ ଅନ୍ୟ ଆଖି ଭିତରେ ଭର୍ତ୍ତି ତୁମ ଦେହର ସିମେଟ୍ରି ! ମନଲୋଭା ଫିଗର୍ ! ମୋ ପ୍ରଲୁବ୍ଧ ହେବାଭଳି ଅକଳନ ଐଶ୍ୱର୍ଯ୍ୟ ! ତୁମ ଭଲ ପାଇବାର ପାଣ୍ଡୁଲିପିକୁ ମୁଁ କରିଦେବି ଏକ ଅଭିଜ୍ଞାନ । ଯେତେ ଯାତ୍ରୀ ଆସିବେ ଦେଖିଯିବେ ସମସ୍ତେ ତୁମ ମୋ ସଂପର୍କର ସେତୁବନ୍ଧ ! ସ୍ଥାପିତ କାନ୍ତ ରାମେଶ୍ୱର !

ତୁମେ କହିବ ମୋ ଭିତରେ ଗୋଟାଏ ସହଜାତ ପଲିମରଫିସ୍ ପ୍ରବୃତ୍ତି ତତ୍ପର ! ସେଇଥି ପାଇଁ ମୁଁ ତୁମକୁ ଚାହୁଁଚି ? ମୋ ଭିତରେ ସୋସିଓ-ଇମୋସ୍‌ନାଲ୍ ବହୁସଂଖ୍ୟକ ଭୋଗ୍ୟ ଚେତନା ଲିପ୍ତ ! ତେଣୁ ମୁଁ ଖୋଜୁଚି ତୁମ ମନ ଓ ତୁମ ଦେହର ତୁଠ ! ମୁଁ ସ୍ୱାର୍ଥ ସର୍ବସ୍ୱ; ସୁବିଧାବାଦୀ କିନ୍ତୁ ନିର୍ବିରୋଧ ସୁଖର ସନ୍ଧାନରେ ପ୍ରତ୍ୟେକ ବ୍ୟକ୍ତି ଅନନ୍ୟ । ମୁଁ ବି !

ଏବେ ଟ୍ରେନ୍‌ର ଗତି .... ?

କ୍ଲାନ୍ତ ସ୍ୱାମୀକୁ ଘଷିମୋଡ଼ି ଦେଉଛି ପତ୍ନୀ ! ଘଷାମୋଡ଼ା କ୍ରିୟାଟି ଯୌନ ସଂପର୍କ ସହିତ ସଂପୃକ୍ତ; ଟ୍ରେନ୍ ଦୋହଲୁଛି ମୋଡ଼ାଘଷା କରୁଥିବା ଯେମିତି ଯୁବତୀ ପତ୍ନୀ ।

ଏଥର ମୁଁ ଉଠି ଯିବି ? ଗାଡ଼ି ବାରଙ୍ଗ ଷ୍ଟେସନ ପାରି ହେଉଛି ! ଏଇଠୁ ନରାଜ ବାଟେ ବାହାରିବ ଶାଳଗାଁ; ନିର୍ଗୁଣ୍ଡି !

ଏବେ କ'ଣ ଗରମ ପଡୁଛି ? ଗରମ ହେତୁ ଏହି ଯାତ୍ରା ମତେ ଅସହ୍ୟ ଲାଗୁଛି ? ପବନରେ ଉଡ଼ିଯାଇଥିବା ଖଣ୍ଡେ ଚିରା କାଗଜପରି ମନଟା ମୋ ଓଲଟ ପାଲଟା ହେଉଛି । ବାରମ୍ବାର ପୋଷାକ ବଦଳାଉଛି ମୋ ନିର୍ଯ୍ୟାତିତ ବିରକ୍ତି ? ଅତିରିକ୍ତ ପ୍ରଗାଢ ଅନୁରାଗ ଭିତରେ ଥାଏ କ'ଣ ଏକ ଅସ୍ୱଷ୍ଟସ୍ଥିତି ? ଆନା ସ୍ନିଟକିନା ବିଂଶବର୍ଷିୟା ଯୁବତୀ ! ପଇଁଚାଳିଶ ବର୍ଷ ବୟସ୍କ ଔପନ୍ୟାସିକ ଡଷ୍ଟୟିଭସ୍କିଙ୍କ ଷ୍ଟେନୋଗ୍ରାଫର୍ । ଅତିରିକ୍ତ ପ୍ରଗାଢ ଅନୁରାଗ ଓ ଲଭ୍ ମେକିଂରେ ହିଂସା ବ୍ୟତୀତ ସିଏ ଡଷ୍ଟୟିଭସ୍କିଙ୍କ ଠାରୁ ଅଧିକ ପାଉଥିଲା କିଛି ? ତଥାପି 'ଅବଶିଷ୍ଟ ଜୀବନ ଆନା ମୋ କୋଳରେ କାଟିଦେବାକୁ ପ୍ରସ୍ତୁତ । ମୈଥୁନ ସୁଖ ନଥିଲା; ଥିଲା ତା' ପାଇଁ ଶାରୀରିକ ଦଣ୍ଡ !'

ଗେଡ଼ା, ଶକ୍ତିହୀନ, ମିଲିଟାରୀ ଇଂଜିନିୟର ବୃତ୍ତି ପଚିଶବର୍ଷ ବୟସରେ ତ୍ୟାଗ କରି ହୋଇଥିଲେ ଲେଖକ ଡଷ୍ଟୟିଭସ୍କି ! ତାଙ୍କ ପ୍ରଥମ ଉପନ୍ୟାସ 'ପୁଅର୍ ଫକ୍' ! ସାହିତ୍ୟକୁ ନୂଆ ମୋଡ଼ ଦେବାରେ ସିଏ ଥିଲେ ଅକ୍ଷରର ଭାନ୍‌ଗୋଘ୍ ! ଜୟନ୍ତୀ ଶୁଣିଛି, ଲେଖକମାନଙ୍କ ପତ୍ନୀ ଓ ପରିବାର ଥାଇ ମଧ୍ୟ ଜଣେଜଣେ ପ୍ରେମିକା ଥାଆନ୍ତି ! ଲେଖକଙ୍କ ଶିଡ଼ିରେ ପ୍ରେମିକା ଊର୍ଦ୍ଧ୍ୱକୁ ଉଠନ୍ତି ! ସିଏ ସେପରି ଉଠିବାକୁ ଘୃଣାକରେ ନା' ସେପରି ଏକ ପ୍ରେମିକା ଜୀବନକୁ ଘୃଣା କରେ ? ମୁଁ ବୁଝି ପାରିନଥିଲି କିଛି ! ତୁମେ ଜର୍ଜଇଲିୟଟ୍‌କୁ ଜାଣତ ? ଅତ୍ୟନ୍ତ ସୁନ୍ଦରୀ ଔପନ୍ୟାସିକାଙ୍କ ପ୍ରେମିକ ଠିକ୍ ସେମତି କୁତ୍ସିତ ଜର୍ଜ ହେନ୍‌ଟ୍ରିଲୁଇସ୍ ! ଲୁଇସ୍‌ଙ୍କ ପତ୍ନୀ ଓ ପରିବାର ଥିଲା; ତଥାପି ଇଲିୟଟ୍‌ଙ୍କୁ ଲୋକ କହୁଥିଲେ ଶ୍ରୀମତୀ ଲୁଇସ୍ । ଲୁଇସ୍‌ଙ୍କ ମୃତ୍ୟୁପରେ କୁମାରୀ ଇଲିୟଟ ନିଜଠୁ କୋଡ଼ିଏ ବର୍ଷ ଛୋଟ ନିଜ ବ୍ୟାଙ୍କର ଜନ୍ ୱାଟର କ୍ରସ୍‌କୁ କରିଥିଲେ ବିବାହ ଏବଂ ତାର ସାତ ମାସ ପରେ ତାଙ୍କ ଏକଷଠୀ ବର୍ଷର ଦେହ ସଂସାରରୁ ନେଇଥିଲା ବିଶ୍ରାମ ! ଭଲ ପାଇବା ସବୁକିଛି; ତା'ର ସାମ୍ନା କର ଜୟନ୍ତୀ ! ଯଦି ଏହା ତୁମପାଖରେ ନଥାଏ; ତୁମେ ତାହା ଆଉକା'କୁ ଦେବ କେମିତି ? ଯାହା ପାଖରେ ଭଲ ପାଇବା ନଥାଏ; ତା' ପାଖରେ ଜୀବନ ନଥାଏ ! ମନୁଷ୍ୟ ରୂପରେ ସିଏ ଏକ ଜୀଅନ୍ତା ଶବ !

ଯେଉଁ ପୃଥିବୀରେ ଫୁଲ ଫୁଟେ, ବୃକ୍ଷରେ ସବୁଜ ପତ୍ର ଦୋଳେ, ଅହରହ ସମୁଦ୍ରରେ ନୀଳନୀଳ ଉଠେ ଜୁଆର, ଜହ୍ନପଡ଼େ, ଉଦିତ ସୂର୍ଯ୍ୟ କିରଣ ଲାଗେ ଚର୍ମକୁ ଯେମିତି ଏକ ମୁଲାୟମ ଶେଯ ! ସେଇ ପୃଥିବୀରେ କ'ଣ ଆବଶ୍ୟକ ଜୀଅଁନ୍ତା ଶବ ଓ ତାର ସଂରକ୍ଷଣ ? ସଂସାରର ଶ୍ରେଷ୍ଠ ଆର୍ଟ ମଣିଷ ! ତା' ବଂଚିବା ଭଲ ପାଇବା ବ୍ୟତିତ ହୋଇ ଯାଏ କୁତ୍ସିତ ।

ଜୟନ୍ତୀ, ତୁମେ ତ ଫୁଟନ୍ତା ପୁଷ୍ପ ! ତୁମ ଓଠ ଇନ୍ଦ୍ରଧନୁର ରଙ୍ଗରେ ଲୋହିତ ! ଗଣ୍ଡ ପୀତ, ଚକ୍ଷୁ ନୀଳନୀଳ ଓ କେଶ ଘନକୃଷ୍ଣ ! ପୁରା ମୁହଁଟା ଗୋଟେ ଜହ୍ନ ! ତୁମ ପାଖରେ ଭର୍ତ୍ତି ଭଲପାଇବା ଜଣାଇ ଦିଏନା ଥଳକୂଳ ! ତୁମ ପ୍ରେମର ଅଥଳ ଗର୍ଭରେ ମୁଁ ଏକ କଂଟକିତ ପଦ୍ମନାଡ଼ ! ପ୍ରିୟତମା, ପଦ୍ମ ଫୁଟିବ ?.... ପଦ୍ମ !

ଫେସନ ପରିବର୍ତ୍ତିତ ହେଉଛି । ଗୋଟାଏ ନୂଆ ସଂସ୍କୃତି ଆକୃତି ନେବା ସକାଳର ଦୃଶ୍ୟ 'ଦୂରଦର୍ଶନ' ଦେଖାଉଛି ! ଫେସନର ଗୋଟାଏ ନୂଆ ବଜାର ଏବେ ସବୁଠି ଖୋଲିବାକୁ ଲାଗିଛି । ଖାଲି ପୋଷାକ ନୁହେଁ; ମଣିଷର ଅଭ୍ୟାସ ଓ ବଂଚିବା ଶୈଳୀ ବଦଳୁଛି !

ଦୂରଦର୍ଶନ ଦୈନିକ 'ସ୍ୱାଭିମାନ', 'ଶାନ୍ତି' ଓ ସମାପ୍ତ ହୋଇଥିବା 'ଶୈଲାବ' ନୂଆ ଅନୁଭବର ପୋଷ୍ଟକାର୍ଡ଼ ! ବୃତ୍ତିଜୀବୀ ନବ ମହିଳା ତା' ପାରଂପରିକ ଭୂମିକା ନେଇ ଅସନ୍ତୁଷ୍ଟ ! ସିଏ ବହୁ ଆକାଂକ୍ଷାରେ ଭର୍ତ୍ତି ଏକ ଆଗ୍ନେୟଗିରି ! ପୁରୁଷସହ ସବୁସ୍ତରରେ ସିଏ ଖୋଜୁଛି ତା' ସମାନତା, ବଂଧୁତ୍ୱ, ଅଭିବ୍ୟକ୍ତିର ଗଭୀରତା ! ଆଧୁନିକ ଦଂପତି ବୈବାହିକ ଅତିରିକ୍ତ ସଂପର୍କ ଖୋଜୁଛନ୍ତି ! ଦୀର୍ଘ ସମୟ ତଳୁଚାପି ହୋଇ ରହିଥିବା ନାରୀ ଯୌନପ୍ରବଣତା, ଶିକ୍ଷା ଓ ସ୍ୱାଧୀନତା ହେତୁ ପୁରୁଷମାନଙ୍କ ସହ ସମକକ୍ଷ ଲାଭ କରୁଛି । ମଣିଷଟିଏ ପରି ତାକୁ ବଂଚିବାକୁ ଶିଖାଉଛି ! ବିଖ୍ୟାତ ମନସ୍ତତ୍ତ୍ୱବିଦ୍ ଅର୍ପିତା ଆନନ୍ଦ କହନ୍ତି, ନାରୀ ଅଧିକ ଅବଗତ ହେଲାଣି ତା'ର ଜନନୀ, ପତ୍ନୀ, ଭଗ୍ନୀ ଓ କନ୍ୟାଭୂମିକାଠୁ ତାର ସ୍ୱୀକୃତି ସିଏ ମାନବିକ ସତ୍ତା ବୋଲି ! ବୈବାହିକଠୁ ଅତିରିକ୍ତ ସମ୍ପର୍କ ତା' ବ୍ୟକ୍ତିଗତ ଅଭାବ ଅଭିବ୍ୟକ୍ତିର ଏକ ମାଧ୍ୟମ ।

ବୈବାହିକ ଓ ରକ୍ତଗତ ସମ୍ପର୍କର ପୁରୁଣା ମୁଦ୍ରା ଅଚଳ ହୋଇ ଆସୁଛି ! ସମାଜର ସୁସ୍ଥତା ଭାଙ୍ଗି ଯାଉନି ତ ?

ଜୟନ୍ତୀକୁ ଫେସନ ବଜାର ଲାଗେ ଅରୁଚି ! ନାରୀର ପ୍ରଜ୍ଞା ଓ ପ୍ରତିଭା ରହିଛି ! ତାର ଅର୍ଥ ନୁହେଁ ଏହା ପୁରୁଷ ସହ ପ୍ରତିଯୋଗିତା ପାଇଁ ଅଛି ଗଚ୍ଛିତ ! ଜୟନ୍ତୀ ଅଫିସ୍‌ଟିଏ ଖୋଜୁନି; ଖୋଜୁଛି ଗୋଟିଏ ହାଣ୍ଡିଶାଳ ! ରୋଜଗାର କରି ଟଙ୍କାରେ କ'ଣ ଶାନ୍ତି କିଣି ହେବ ?

କିଣି ହେବ ଗୁଡ଼ିଏ ସୁବିଧା ! ସେ ସୁବିଧାଗୁଡ଼ିକ ନାଁ ଆଧୁନିକତା ! ମାତ୍ର ବଂଚିବାଟା ଯେ ଥିବ ପୁରୁଣା ! ପୁରୁଣା ବଂଚିବାକୁ କ'ଣ ବଦଳାଇ ଦେବ ପୋଷାକ ?

ପୋଷାକ ଜଣେ ପିନ୍ଧେ କାହିଁକି ? କାହିଁକି ?

ଋତୁ ବଦଳୁଚି । ଋତୁ ସହିତ ପୋଷାକ ପରିଧାନ; ଫେସନ ବଦଳିବ ! ପ୍ରାଚୀନତମ ଓ ମାଂଦାତମ ପୋଷାକ ଉତ୍ସାହ ଓ ସରସତାକୁ ମାରିଦିଏ ! ଫୁଟାଫୁଲ ପରି ସତେଜତା ମନରୁ ଲିଭିଯାଏ ଓ କର୍ମ ପ୍ରବଣତା କମିଯାଏ ! ଅନ୍ୟ ପକ୍ଷରେ ମଣିଷ ଅନାକର୍ଷଣୀୟ ଦିଶେ । ନ୍ୟାସନାଲ୍ ଇନିଷ୍ଟିଚ୍ୟୁଟ୍ ଅଫ୍ ଫ୍ୟାସନ ଟେକ୍ନୋଲୋଜି ତା ଯୁକ୍ତିବାଢ଼େ ଫ୍ୟାସନ୍‌ର ମୂଳକଥା ମଣିଷ ଯାହା ତାକୁ ବଦଳାଇ ତାକୁ ସେଲ୍ଫିକରି ଅନ୍ୟମାନଙ୍କ ଦୃଷ୍ଟିର ସାମ୍ନାରେ ଠିଆ

କରାଇବ ! ଏବେ ଗ୍ଲାମୋର୍ ବଡ଼ କଥା ! ଈଶ୍ୱରଙ୍କ ଆର୍ଟକୁ ନିଜ ରଙ୍ଗ ଓ ତୂଳୀର ସ୍ପର୍ଶ ଦେଇ ପ୍ରାକୃତିକ ଓ ସବୁଜ କରିବା ?

ଗୋଟିପୁଅ ନାଚ, ଦାସକାଠିଆ, ପାଲା ବଦଳରେ ଏବେ ସହରରେ ଚାଲିଲାଣି ଫେସନ୍ ଶୋ'। ଜେମ୍ସବଣ୍ଡ କମ୍ପାନୀର ପଶ୍ଚିମୀ ନିସିମ୍... ନିସିମ୍... ସଂଗୀତର ତାଳେ ତାଳେ ସୀମିତ ଓ ନିର୍ଦ୍ଦିଷ୍ଟ ଆଲୋକ ଲହରୀରେ ମଡ଼େଲମାନେ ଚାଲିଆସିବେ ଦର୍ଶକ ଦର୍ଶିକାଙ୍କ ସାମ୍ନାକୁ; ଷ୍ଟେଜ୍ ଉପରକୁ ! ପୋଷାକ ସହିତ ସେମାନଙ୍କ ଅଙ୍ଗ ଲାବଣ୍ୟରେ ଆକୃଷ୍ଟ କରାଇ ଫେରିଯିବେ ଗ୍ରୀନ୍ ରୁମ୍‌କୁ ! ପୁଣି କେଉଁ 'ସୋ' ରେ ହିନ୍ଦି ଫିଲ୍ମ ମ୍ୟୁଜିକ୍ ସହିତ ମଡ଼େଲ ଆସନ୍ତି ଷ୍ଟେଜକୁ !

ଫ୍ୟାସନ୍ ସୋ'ର ସଂସ୍କାର ୧୯୯୭ ରେ ହୋଇଛି ଆରମ୍ଭ ! ଆଧୁନିକତା ବି ବଦଳୁଛି ! ଫିରୋଜ ଗୁଜୁରାଲ- ଏକ ସମୟର ବିଖ୍ୟାତ ମଡ଼େଲ ଏବେ ପୂର୍ବତନ ପ୍ରଧାନମନ୍ତ୍ରୀଙ୍କ ପୁତୁରା ବୋହୂ, ଆରମ୍ଭ କଲେ ଏକ ସୋ ! ମନେମନେ ଅପ୍ରସନ୍ନ ମୁହିଁ, ମୁକୁଳାବାଳ, ଧୂସର ଓ ନୀଳ ମତ୍ସ୍ୟ କନ୍ୟା ପରି ପୋଷାକ ଓ ଦେହ ! ସିଏ ତାଙ୍କ ସୋ'ରେ ଦେଖାଇଲେ ଢଳଢଳ ବକ୍ଷୋଜ କଡ ଓ ଛୋଟଛୋଟ ଖ୍ରିସ୍‌ମିସ୍ ! ରକ୍ତ ପ୍ରବାଳ ପରି ଆକର୍ଷଣୀୟ ସ୍ତନାଗ୍ର ! ତା ଉପରେ ସାମ୍ନାରୁ ସମସ୍ତଙ୍କ ଚକ୍ଷୁର ଜ୍ୟୋତି ରଗଡ଼ି ହୋଇଯାଉଛି ! ଯୁବତୀ ମଡ଼େଲଙ୍କ ପଏଣ୍ଟିଂ ଅଙ୍ଗ ଫଟୋଗ୍ରାଫରଙ୍କ କ୍ୟାମେରାକୁ କରୁଥିଲା ଅଧିକତରରୁ ଅଧିକତମ ସଚେତ !

ଦର୍ଶକ ଓ ଫଟୋଗ୍ରାଫର୍ ଦେଖୁଥିଲେ 'କ୍ୟାଟ ୱାକ୍ !' ପ୍ରଥମେ ପ୍ରଥମେ କେତେକ ଅଭିଭାବକ ନିଜ ଅନୁଢ଼ା କନ୍ୟାର କ୍ୟାଟୱାକ୍ ପାଇଁ କରିନଥିଲେ ଅନୁମୋଦନ। ଐଶ୍ୱର୍ଯ୍ୟା ରାୟ ଓ ସୁସ୍ମିତା ସେନ ଭାଙ୍ଗି ଦେଲେ ସେମାନଙ୍କ ପୁରୁଣା ଭାବନାର ମାଠିଆ ! ଗ୍ଲାମୋର୍‌ର ନୂଆ ଫ୍ରିଜ୍‌ରୁ ଥଣ୍ଡା ପାଣିର ସ୍ୱାଦ ବଦଳାଇ ଦେଲା ବାଛନ୍ଦ।

...ଛାତିକୁ ମୁନିଆକରି ପ୍ରଦର୍ଶିତ କରିବା ନୁହେଁ ଅମାର୍ଜିତ ! ସୌନ୍ଦର୍ଯ୍ୟର ଆକର୍ଷଣକୁ ଫୁଟାଇବା ହୁଏ ସହଜ !

ଏବେ ନିପଲ୍‌ର ଯୁଗ !

'ଫେମିନା' ମଇ ୯୭ରେ 'ନୟନିକା' ସଜାଇଛି ତା' ବକ୍ଷୋଜ ପରିପାଟୀ ! 'ମନ୍ତ' ପତ୍ରିକାର ପ୍ରଚ୍ଛଦ ଯୁବତୀ ନିପଲ୍ ପ୍ରଦର୍ଶନ ଯୁଗର ପ୍ରତିନିଧିତ୍ୱ କରିଛି ! ରିନା ଧାକା, ଜଣେ ଫେସନ ଡ଼ିଜାଇନ୍ ମହିଳା ସର୍ବପ୍ରଥମେ ମଡ଼େଲକୁ ସଂକ୍ଷିପ୍ତ ପୋଷାକ ତଳେ ପିନ୍ଧାଇ ନଥିଲେ ଅନ୍ତର୍ବସ୍ତ୍ର ତାଙ୍କ ଶୋ'ରେ ! ମଡ଼େଲ ସବୁଥିଲେ ଶୀଥିଳ ଯୁବତୀ ! ଫେସନବାଦୀ ଭାବନ୍ତି ସ୍ତନାଗ୍ର ପ୍ରକୃତିର କମକୁଟ ବୋତାମ । 'ଟାଇମ୍ସ' ମାଗାଜିନ୍ ତା 'ଷ୍ଟାଇଲ୍' ସ୍ତମ୍ଭରେ ଲେଖିଚି ସପକ୍ଷ କୈଫତ୍ ।

ଯେତେବେଳେ ତୁମେ ହେଇଯାଇଥାଅ ଶୀଥିଳ, ମାଂସପେଶୀହୋଇଯାଇଥାଏ କୋହଳ । ତାକୁ ଦୃଢ଼ କରିବାକୁ ଏକତ୍ରିତ କରିଥାଅ ଉତ୍ତେଜନା । ଯଦି ଜଣେ ଯୁବତୀ ପରିଧାନ କରେ ବ୍ରା' ତା' ସ୍ତନାଗ୍ର ଚାରିପଟେ ଜମାଟବାନ୍ଧେ ପ୍ରଦାହ ଓ ଆବଶ୍ୟକ ହୁଏ ମାଂସପେଶୀର ସଂପର୍କ ! ତାହା ସ୍ତନାଗ୍ରକୁ କରିଥାଏ ଉତ୍ତେଜିତ ! ଏହା ଏକ ଅନୈଚ୍ଛିକ ପ୍ରତିକ୍ରିୟା !

ମନସ୍ତତ୍ତ୍ୱବିଦ୍‌ଙ୍କ ପ୍ରତିକ୍ରିୟା ଲାଗେ ବଡ଼ ଦୁର୍ବୋଧ୍ୟ !

ଜଣେ ନାରୀ ଭାବୁ, ଏଇଟା ତା' ନିଜ ରାସ୍ତା ! ଏହା ଏକ ଯୌନ ପ୍ରଦର୍ଶନ, ଯାହା ବାରିହୋଇଯାଏ ତା' ମୁହଁରୁ !

ପିଟରପାନ୍ କହନ୍ତି ଭାରତୀୟ ବ୍ରା' ଗୁଡ଼ିକ ମୋଟା, ଯାହା ସ୍ୱୀକାର କରାଏ ନାହିଁ ସ୍ତନାଗ୍ରମାନଙ୍କ ସ୍ଥିତି । ପ୍ରଥମେ ବ୍ରା ଥିଲା ସୂତା ପ୍ରସ୍ତୁତ । ପ୍ରତ୍ୟେକଟି ସ୍ତନକୁ କହିବାକୁ ସକ୍ଷମ କରାଇଥିଲା ସେମାନଙ୍କ ନିଜନିଜ ଭାଷା ! ''ମଡ଼େର୍ଣ୍ଣ ମ୍ୟାନର୍ସ'' ଖଣ୍ଡେ ବହି ଲେଖିଛନ୍ତି ଦୃଶିଲା ବେଫୁସ୍ ! ସେ କହନ୍ତି ସ୍ତନାଗ୍ର ପ୍ରଦର୍ଶନ ଶିଷ୍ଟାଚାର ! ଏପରି କିଛି ଅଫିସ୍ ପ୍ରଭୃତି ସ୍ଥାନରେ ପରିଧାନ କରିବା ଅନୁଚିତ ଯାହା ପ୍ରଦର୍ଶନ କରାଏ ସ୍ତନାଗ୍ରର ଆକୃତି ! ସକ୍ ଦେଲାଭଳି ପୋଷାକ ଲୋକଙ୍କୁ ବୋଧ ହୁଏ ଅସହଜ । ଲାଗେ ଅଶ୍ୱସ୍ତି ।

ଦୁଇ ଦଶଂଧି ତଳେ ନାଭି ତଳ ଚର୍ମ ଓ ମାଂସ ପ୍ରଦର୍ଶନ କରୁଥିଲେ ମଡ଼େଲ୍ ! ଏବେ ସ୍ତନାଗ୍ର ! ମୁକୁଳା ସ୍ତନର ପ୍ରଦର୍ଶନ କେବେ ?

ଆସିଛୁ ଲଙ୍ଗଳା ହୋଇ, ଯିବୁ ତୁ ଲଙ୍ଗଳା ! ମଝିରେ ଚେନାଏ ପଥ ତୋ' ଜୀବନ, ଲଙ୍ଗଳା ହେବାକୁ ମଣିଷକୁ କିଏ ସେ କରିବ ମନା ? ବାଃ ରେ ଦେହ ପ୍ରଦର୍ଶନୀ ! ଫେସନ

ଶୋ' ନାଁରେ ସାମାଜିକ ଲେବୁଲଦିଆ ସେକ୍ସ !

...ମଣିଷ କେତେ ତଳକୁ ଖସିଗଲାଣି !! କିନ୍ତୁ ଜୟନ୍ତୀ ଏବେବି ରାମାୟଣ ରଚନା କାଳରେ ରହିଛି !

ତା' ପାଇଁ ତୁଳସୀ ଗୋଟିଏ ଦାମୀ ଔଷଧ ଗଛ ନୁହେଁ, ପତିତପାବନୀ ଦେବୀ ବୃନ୍ଦାବତୀ ! ତା' ଡ଼ାଳରେ ଗଙ୍ଗା, ପତ୍ରରେ ଦେବତା ଓ ମୂଳରେ ଥା'ନ୍ତି ସ୍ୱୟଂ ବିଷ୍ଣୁ, କି କଳ୍ପନା ! ଏ କଳ୍ପନାକୁ ଭଲ ଦେଖାଉଛି ରବିବାର ଟି.ଭି. ।



# ଆଦିତ୍ୟସ୍ୟ କୃଷ୍ଣ ରୂପମ୍

'ଫିଜିକାଲ୍ ଲଭ୍ ଓ୍ୱାଜ୍ ଆନ୍ ଆପ୍ରୋପ୍ରିଏଟ ସବ୍‌ଜେକ୍ଟ ଫର ଆର୍ଟ !' କିଏ କହିଥିଲା ଜାଣିଚ ? ରେମ୍ବ୍ରାଣ୍ଡ୍ ଭନ୍ ରିଜ୍ ! କଳା ତା' ପତ୍ନୀ ! ତା' ଜୀବନର ଅନ୍ୟ ନାଁ ଅଭାବ ! ଦେବାଳିଆ ଭୋକିଲା ଶିଳ୍ପୀ ପତ୍ନୀଙ୍କ ସମାଧିର କଳା ପୂର୍ଣ୍ଣ ତୁଳ ବାଧ ହୋଇ ଦିନେ ଆଉକା'କୁ ଦେଇଥିଲା ବିକି !

'ସେକ୍ସ ଆଜ୍ ଗଡ୍‌ସ୍ ଗ୍ରଜ୍ ଏଗ୍‌ନେଷ୍ଟ ଓ୍ୱମ୍ୟାନ୍'- କହୁଥିଲେ ରସେଲ୍‌ଙ୍କ ପତ୍ନୀ ଆଲିଶ ପିଆର୍ସାଲ୍ ସ୍ମିଥ୍ । ବିଷାଦବାଦର ଜନକ ଡି ସେଡ୍ କାରାକକ୍ଷରେ ଆବିଷ୍କାର କରିଥିଲେ ଯୌନଯାତନା ସହ୍ୟ କରିବାର ଦୁଇଟି ମାଧ୍ୟମ, ଏକାଏକା ସହବାସ ଓ ସାହିତ୍ୟ !

ସାହିତ୍ୟକୁ ସେକ୍ସ ବୋଲି କହୁଥିଲେ ଶୋଭାଦେ ଏବଂ ସାର୍ତ୍ରେ ! ସାର୍ତ୍ରେ ଗୋଟିଏ ଶବ ସଂସ୍କାର ବେଳେ ନିଜଠୁ ବଡ଼ ତିନିବର୍ଷ ଗୋଟିଏ ଯୁବତୀ ସହିତ ପରିଚିତ ହେଲେ, ତା' ନାଁ କାମିଲୀ ! ଶବ ସଂସ୍କାରରୁ ଫେରି ଦୁହେଁ ଚାରି ଦିନ ତିନିରାତି ଗୋଟିଏ ଶେଯରେ ସୁଖର ଫାଶରେ ଆବଦ୍ଧ ହୋଇ ରହିଗଲେ, ସଂପର୍କୀୟମାନେ ଅଲଗା ନକରିବା ଯାଏଁ । ହାୟ, କି ମିଳନ ସିଏ ! ସାର୍ତ୍ରେଙ୍କ ସହିତ ସିମନ ଡି ବିୟୁଭୋରଙ୍କ ସଂପର୍କ ସୁଦୀର୍ଘ ପଚାଶ ବର୍ଷ ! ସିମନ ଲେଖିଛନ୍ତି ଉପନ୍ୟାସ 'ସି କେମ୍‌ଟୁ ଷ୍ଟେ' ଜଣେ ରୋଗୀ ସହିତ ନର୍ସ ଯେମିତି ତାଙ୍କ ପ୍ରଣୟ ଥିଲା ଠିକ୍ ସେମିତି ! ସିମନ୍‌ଙ୍କଠୁ ସତର ବର୍ଷ ସାନ କ୍ଲାଉଡି ଲାଂଜମ୍ୟାନ୍; ଜଣେ ସାମ୍ବାଦିକ ! ତାଙ୍କୁ ନିଜ ଦେହର ଫୁଲ ଶେଜ ଅର୍ପଣକଲେ ସିମନ୍ ସୁଦୀର୍ଘ ଆଠବର୍ଷ, ଲେଖିଲେ

'ଲିଭ୍ ଉଇଥ'; ତାଙ୍କ ସହିତ ନିଜ ବିବାହିତ ଜୀବନ ! ଲାଂଜମାନ୍ ତାଙ୍କୁ ତ୍ୟାଗକଲାପରେ ପୁଣି ସିଏ ଫେରି ଆସିଥିଲେ ସାର୍‌ତ୍ରେଙ୍କ ପାଖକୁ; ସାର୍‌ତ୍ରେଙ୍କ ଦେହତ୍ୟାଗ ଯାଏ ।

ଜୟନ୍ତୀ, ତୁମେ ମୋର କାମିଲୀ; ମୁଁ ତୁମର ଏକ ଶୀତଳ ହଳଦୀ ଓ ଚନ୍ଦନଯୁକ୍ତ ଆୟୁର୍ବେଦିକ କ୍ରୀମ୍; ବୋଳି ହୋଇଯିବି ! ପ୍ରତି ଲୋମ କୂପରେ ମୋ ଅସ୍ତିତ୍ୱର ଅଠା ତୁମ ଦେହ, ମନ ଓ ସମୟକୁ କରିଦେବ ମିଠା ! ମୋ ଆଶ୍ଲେଷର ମାଦକତା ତୁମକୁ ମାତାଲ କରିରଖିବ ମଦ୍ କ୍ଷରିତା ସୁଗନ୍ଧଯୁକ୍ତା ହସ୍ତିନୀପରି ! ତୁମ ଚାଲିରେ ଫୁଟିଉଠିବ ନୂତନ ଛନ୍ଦ ! ତାକୁ ବାନ୍ଧି ଧରି ରଖିପାରିବ ତୁମ କବିତା ? ପାରିବ ?

ସେ କବିତାର ଦ୍ରାକ୍ଷାମଧୁ ମୋ ଓଠ ପାର୍ଶ୍ୱେ ଟୋକିଦିଅ ପ୍ରିୟତମା ! ଗଭୀର ଆରକ୍ତ ଶୀତଳ ଶାନ୍ତି ବୁଜିଦେବ ଆୟୁଷ୍ମତୀ ଜ୍ୟୋତିଷ୍ମାନ ଶିଖା; ମୋ ପାଖୁଡ଼ାର ସ୍ୱପ୍ନଭିଜା ଦୁଇ ପତା !

ସ୍ତ୍ରୀ ଲୋକର ନା ହିଁ ଅର୍ଥ ହଁ !

ନାହିଁର ନଈ ମଝିକୁ ତୁମେ ମୋ ହାତଧରି ଚାଲିଆସିଲଣି ଜୟନ୍ତୀ ! ପଛକୁ ଫେରିବ ନା' ଆଗକୁ ଯିବ ?

ଜୟନ୍ତୀ, ପ୍ରକୃତରେ କ'ଣ ଜଣେ ଭଲପାଏ ? ଦେହକୁ ? ଦେହଟା କ'ଣ ଏତେ ଅଚିହ୍ନା ! ଦେହଜ ସୁଖ କ'ଣ କରେ ଏତେ ଉତଳା ? ଭଲ ପାଇବା ଏକ ସେତୁ । ଥରେ ସେ ସେତୁ ଉପରକୁ ଉଠିଲେ ପାରିହେବାକୁ ହିଁ ପଡ଼ିବ ତାକୁ ! ତୁମେ ଏବେ ସେତୁ ମଝିରେ !

ମାଓ ତାଙ୍କ ପ୍ରେମିକା ଲାନ୍ ପିଙ୍ଗକୁ କ'ଣ ଡ଼ାକୁଥିଲେ ଜାଣ ?

'ବ୍ଲୁ ଆପେଲ୍ !' ନୀଳ ସେଓ ! ତୁମେ ମୋର କନକ କମଳା ! ଚକ୍ଷୁର ପତା ଟେକ ଜୟନ୍ତୀ; ଦେଖୁଚ ମୋ ଓଠର ଉତପ୍ତତା !

ଷ୍ଟେଣ୍ଡଲ୍ ନେପୋଲିଆନ୍‌ଙ୍କ ଆର୍ମିରୁ ଅବସର ନେଇ ଫେରିଲେ ପାରିସ୍ । ଜଣେ ଇଟାଲୀୟ ଯୁବତୀ ଫୁଲ ତାଙ୍କୁ କରିଦେଲା ପାଗଳ ! ନ ପାଇ ତାକୁ ଆତ୍ମହତ୍ୟା ପାଇଁ ଉଦ୍ୟମ କଲେ ଔପନ୍ୟାସିକ ! ପ୍ରେମ ଓ ଆତ୍ମହତ୍ୟା ଦୁଇଟିଯାକରେ ହେଲେ ବିଫଳ ! ସିଏ ଲେଖିଲେ- ବିଫଳତା ହିଁ ଜୀବନ' ! ଜଣେ ସ୍ପେନର ଗପ 'ଅର୍‌ମାନ୍ସ ।'

ଗୋଟିଏ ଶଯ୍ୟାରେ କ୍ରମାଗତ ଭାବେ ଏକ ସମୟରେ ସାତଥର ଜଣେ ଯୁବତୀ ଦେହର ଫୁଲକୁ ଦଳିଚକଟି ନିଜକୁ ମଲ୍ଲୀକଢ କରି ତା' ଭିତରେ ଦେଲେ ଓଜାଡ଼ି । ଏଇ କ୍ରମାଗତ ସାତଥର ବ୍ୟତୀତ ସେଇ ରାତି ଆଡ଼ିସ୍‌ନାଲ ମେନି ଟାଇମ୍ସ ନିଜକୁ ଗୁଣ୍ଡଗୁଣ୍ଡ କରି କାଟି ତା' ଜରାୟୁର ଗୁମ୍ଫାରେ ସିଏ ରହିଯାଇଛନ୍ତି ! ସକାଳକୁ ତାଙ୍କ କଲମରୁ ନିଗିଡ଼ି ଆସିଛି ଅନବଦ୍ୟ କୃତୀ 'ଅରମାନ୍ସ' !

ଭିକ୍ଟୋର ହ୍ୟୁଗୋ ! ଜୀବନଠୁ ବହୁତ ବଡ଼ ତାଙ୍କ ଉପନ୍ୟାସ ଓ ପ୍ରେମ ! ସିଏ ଠିଆଠିଆ ଲେଖନ୍ତି । ଶୁଅନ୍ତି ମାତ୍ର ଚାରିଘଣ୍ଟା । ତାଙ୍କ ସକାଳ ବିତେ ଜଣେ ଯୁବତୀ ପତିତା ସହିତ । ଭୋଜନ ପୂର୍ବ ମଧ୍ୟାହ୍ନ ସମୟ ସିଏ କାଟନ୍ତି ଜଣେ ଆଗ୍ରହୀ ଅଭିନେତ୍ରୀ ଦେହର ବଖରାରେ ! ରାତିକୁ ପ୍ରେମିକା ଜୁଲିଏଟ ଓ ଲିଓନିଡ଼ ବାଣ୍ଟି ନିଅନ୍ତି ! ୧୮୪୮ ରୁ ୫୦ ଦୁଇଟି ବର୍ଷ ପାଖାପାଖି ଦୁଇଶତ ମହିଳାଙ୍କ ସଂପର୍କର ଟିପ ତାଙ୍କ ଜୀବନ ଆର୍କେଷ୍ଟ୍ରାକୁ କରିଛି ବାଦିତ ! ପଢିଚ ତାଙ୍କ 'ଲା ମିଜରେବ୍ଲ' !

ଜୁଲିଏଟ ତାଙ୍କୁ ଏକ ହଜାର ସାତଶତ ପତ୍ର ଲେଖିଚି ! ଜୟନ୍ତୀ, ତୁମେତ ମତେ ଲେଖିନଥିବ ଏକଶତ ଚିଠି !

ଅଶୀବର୍ଷ ବୟସରେ ଜଣେ ଯୁବତୀ ରଜକିନୀକୁ ଆଲିଙ୍ଗନକରି ନାତିକୁ ବୁଝାଇ ଥିଲେ - 'ଜର୍ଜ୍', ଏହା ହିଁ ଜିନିୟସ୍ ।'

ମୋ ନଭେଲ ? ଓନ୍‌ଲି ଲଭ୍ ! ସଂସାରକୁ ସୃଷ୍ଟି କରିଛି ସାହିତ୍ୟ । ତା' ନହେଲେ ସଂସାର ହୋଇଥାନ୍ତା ଅଚିହ୍ନା ଓ ଅଲୋଡ଼ା ଦ୍ରବ୍ୟ । ସଂସାର ଈଶ୍ୱରଙ୍କ ଭଲ ପାଇବାର ଅତ୍ୟନ୍ତ ପ୍ରାଚୀନ ନାମ !

ଜୟନ୍ତୀ, ତୁମେ ଭଗବାନଙ୍କୁ ମାନ ?

'ୱାଇ୍ ଏ ୱେଲ୍‌କମ୍ ଟୁ ଚେଂଜ୍ ? ଖ୍ରୀଷ୍ଟୋଫର ଇଶ୍ୱରଉଡ୍‌ଙ୍କ ବର୍ଲିନ୍ ଉପନ୍ୟାସର ପରିବର୍ତ୍ତନ ! ତାକୁ ସମ୍ଭାଳିବାକୁ ଓଡ଼ିଶାରେ ପାଗ କାହିଁ ? ପରିବେଶ ଓ ସଂସ୍କୃତି ନାହିଁ ।

ତୁମ ଶାଢ଼ୀଠୁ ମୂଲ୍ୟବାନ ପରିବର୍ତ୍ତନ କି ଜୀବନ ଏଠି ନାହିଁ ଜୟନ୍ତୀ ! ଏତେ ଶସ୍ତା ଏହି ଜୀବନକୁ ବଦଳାଇବାକୁ ଡ଼ର ମାଡୁଛି ? ଏତେଭୟ ? ଡ଼ରିବା ଶିଖେଇଚି କିଏ; ସେଇ

ବୁଢ଼ା ମାଷ୍ଟର ! ଯା' ଆଖିରେ ସବୁବେଳେ ଖାଲି ମତଲବ୍ ! ଖାଲି ମତଲବ୍ ! ସିନେମା ଓ ଦୂରଦର୍ଶନକୁ ଛାଡ଼ିଦେଲେ ଲୋକଟା ଦେଖିଚି ବିବ୍ରାସ୍ତା ଉପରେ କେଉଁଠି ଧର୍ଷଣ ? କିମ୍ବା ଚାକୁମାଡ଼ ! କରିଛି କେବେ ପ୍ରେମ କିମ୍ବା ଆଲିଙ୍ଗନ ? ଭିଡ଼ ଭିତରେ ଚିପିଚି କା'ସ୍ତନ ?

ଲୋକଟି ଖାଲି ମିଛ ବହି ଲେଖିଚି ! ଓଃ, ତା'ର କି ମାର୍କେଟ ! ସେ ବହିରେ ଅଛି କିଛି ? ବିକ୍ରୟ କରେ ଖାଲି ବଂଗୀୟା ତସ୍‌ଲିମାର ଉତ୍ତେଜନା !

ସେଦିନ ରେଡ଼ିଓ ଷ୍ଟେସନ୍‌ରେ ଛୋଟ ଖଣ୍ଡେ କାଗଜରେ ଲେଖି ତୁମେ ବଢ଼ାଇଦେଲ ତୁମ ଠିକଣା । ତୁମ ଓଠ ଓ ଆଖିରେ ଲେଖାଥିଲା ଗୋଟିଏ କଥା-'ଚିଠି ଦେବ !' ଜୟନ୍ତୀ, ତୁମକୁ ମୁଁ ଚିଠି ଲେଖିଛି ! ତୁମ କବିତା ପଂକ୍ତିପରି କଂଠସ୍ୱର ମୋ କାନରେ ଏସ୍ରାଜ୍‌ର ତରଙ୍ଗ ତୋଳୁଛି ! ତୁମକୁ ଦେଇଛି ଚିଠି; ଦେଇଛି ନିଜ ମନ ଓ ଭଲପାଇବାକୁ ବି ! ନେବନି ତୁମେ ?

ନ ନିଅ !... ଯଦି ପାର ତୁମ ଭଲପାଇବାର ପୁଷ୍ପଗୁଚ୍ଛଟି ମତେ ଦିଅ; ମୁଁ ବୋହିନେବି ତୁମେ ମରୁଭୂମି ପାରି ହେବା ପର୍ଯ୍ୟନ୍ତ; ଯେଉଁଠି ତୁମେ ମନା କରିବ; 'ଥାଉ', ମୁଁ ରଖିଦେବି !

ତୁମ କବିତା ପଢ଼ି ମୁଁ ଲେଖିଥିଲି ଚିଠି ! ଯେମିତି 'ଦି ଷ୍ଟୋରି ଅଫ୍ ଆନ୍ ଆଫ୍ରିକାନ୍ ଫାର୍ମ' ପଢି ହାଭଲକ୍ ଇଲିସ ତା' ଲେଖକ ରାଲ୍‌ଫ ଆଇରନ୍‌କୁ ଦେଇଥିଲେ ପତ୍ର ! ବହିଟି ତାଙ୍କୁ ଖୁବ୍ ଭଲ ଲାଗିଛି ! ଚାଲିଲା ଚିଠି । ରାଲ୍‌ଫ ଆଇରନ୍ ଥିଲା ଏକ ଛଦ୍ମ ନାମ ! ପ୍ରକୃତରେ ସିଏ ଥିଲେ ଅଣତିରିଶ ବର୍ଷିୟା ଜଣେ ମହିଳା କୁମାରୀ ଆଲିଭେ ଶ୍ରୀନେର୍ ! ଠିକ୍ ତୁମପରି ! ସିଏ ପଠାନ୍ତି ତାଙ୍କ 'ଡ୍ରେଲିଜର୍ଣ୍ଣାଲ' ହାଭଲକ୍‌ଙ୍କ ପାଖକୁ; ଯେମିତି ମୋ ପତ୍ରିକା ଯାଏ ତୁମ ଶୟନ କକ୍ଷକୁ । ଦିନେ ପରସ୍ପର ହେଲେ ଭେଟ ।

ପ୍ରାତଃ ଭ୍ରମଣରତ । ଦେହକୁ ଲାଗିଛି ଦେହ । ଦୋଦୁଲ୍ୟମାନ ଶ୍ରୀ ନେଇ ପାପୁଲି ରହି ରହି ଛୁଇଁ ଦେଇଛି ଝୁଲନ୍ତା ତାରାମାଳାକୁ ! ଢଳଢଳ ବସନ୍ତକୁ ! ବସନ୍ତଟା ଖାଲି ଶ୍ରେଷ୍ଠ ଋତୁ ନୁହେଁ, ପୁରୁଷର ଦେହାଂଶ ମଧ୍ୟ ! ପ୍ୟାଣ୍ଟ ତଳେ ବଦହଜମ ବସନ୍ତ ଋତୁ କି କୌତୁକିଆ ! ପଶାକାଠି ଗଡ଼ଗଡ଼ାଉଛି ! ପାପୁଲିର ପବନରେ ପତାକାଟା ମନ୍ଦିର ଚୂଡ଼ାରୁ ଲହରାଇବ ? କେତେ ଲମ୍ବା ତା' ଲାଞ୍ଜ !!

ଗୋଟେ ସୋଫା ଉପରେ କୋଣାର୍କର ଉଲ୍ଲଗ୍ନ ନାରୀମୂର୍ତ୍ତି ନିଜକୁ ଖୋଲି ଧରିଛି !

ଉଲ୍ଲଗ୍ନ ହାଭ୍‌ଲକ୍ ବାହୁର ଅଣ୍ଡରଓ୍ୱେୟାରରେ ଫାଶପଡ଼ିଯାଇଛି ! ଶୀତଳ କନ୍ଥଳପାଟି ଉପରେ ଥାପିଲେ ନିଜ ଥରଥର ଉତ୍ତପ୍ତ ଓଠ ! ଚୁମ୍ବନ ପରେ ଚୁମ୍ବନ ! ଯେମିତି ଅଲିଭେ ମସ୍ତିଷ୍କ ଭିତରେ କିଏ ଗୋଟେ ଗୋଲାପ କଢ଼ରେ ମନ୍ଥୁଛି ତା' ସାରା ଦହି ! ଫେଣ, ଖାଲି ଫେଣ... ଏଥର ନବନୀତ ହାଣ୍ଡିରୁ ନିମ୍ନକୁ ନିଗିଡ଼ି ପଡ଼ିବ !

ଆହୁରି ଯୋରରେ ପରସ୍ପର ପରସ୍ପରକୁ ଭିଡ଼ିଧରିଲେ ! କିନ୍ତୁ ହାଭଲକ୍‌ଙ୍କ ସ୍ନାୟୁର ସହର ଥିଲା ସ୍ଥିର ! ଯେମିତି ସିଏ ଏକ ମୃତ ସମୁଦ୍ର ! ସାରାଜୀବନ ପରସ୍ପର ସାଇତି ରଖିଥିଲେ ଅମୂଲ୍ୟ ସଂପଦ; ତାହା ବନ୍ଧୁତ୍ୱ !

ମୃତ ସମୁଦ୍ରକୁ ଯେଉଁ ନାରୀଟି କରିଥିଲା ଜୀବନ୍ତ ଦୁଗ୍ଧ ସମୁଦ୍ର, ସିଏ ଜଣେ ଫରାସୀ ଯୁବତୀ; ଫ୍ରାଂକ୍ୟୁଇ୍ ସୀଅନ୍ ଏଡ଼ିଥ୍ ! ଜୟନ୍ତୀ, ତୁମକୁ ମୁଁ ଭୁଲିଯିବି କେମିତି ? ତୁମେତ ତା'ରି ନବମୂର୍ତ୍ତି ! ନାରୀ ଓ ଈଶ୍ୱରୀ; ମୋ ପାଇଁ ଏକାପରି ! ଭକ୍ତି ଓ ଭଲପାଇବା ଦୁଇଟି ଯାକ ଏକ 'କର୍ମ', ମୁଁ ସନ୍ୟାସୀ କପିଳମୁନି ! ମୁଁ କଣାଦ, ମୁଁ ଗୌତମ ! ସବୁ ଭଂଲ ଓ ମନ୍ଦର ଉର୍ଦ୍ଧ୍ୱ ; ଉଡ଼ନ୍ତା ମେଘ !

ଜୟନ୍ତୀ, ଅବିମିଶ୍ରିତ ଭଲପାଇବାର ଆକାଶରେ ଜ୍ଞାନର ଅଧିଷ୍ଠାତା ସୂର୍ଯ୍ୟ ! ଅସତ୍ୟ ଆଡୁଆଳ କରୁଛି ସୀମାବଦ୍ଧ ଅଦ୍ୱିତୀୟ ବ୍ୟଂଜନାକୁ ! ବିଦ୍ୟା ସହ ଅବିଦ୍ୟାର ସହାବସ୍ଥାନ ଜ୍ଞାନପରି ସ୍ଥାୟୀ ଓ ଯଥାର୍ଥ ! ଦୀପ ମୃଣ୍ମୟ ଓ ଶିଖା ଚିନ୍ମୟ ! ଦେହତ ମାଟିର ଦୀପ; ପୃଥିବୀତତ୍ତ୍ୱ ! ଶିଖା ନିଜେ ହିଁ ତେଜ ! ନିଜେ ତ ଅଚିନ୍ତ୍ୟ !

ମୁଁ ଶେଷ ବିଂଶର ଆର୍ଟିଷ୍ଟ ! ଶତାବ୍ଦୀର ପ୍ରାରମ୍ଭରେ ଛିଂଚାଡ଼ି ଦେଲି ସ୍ୟାହି; ହେଲା 'ବ୍ଲୁପୋଲ୍ସ' ! ଶ୍ରେଷ୍ଠ କଳାକୃତୀ ! ଏବେ ମୁଁ ଖୋଜୁଚି ଅଚିନ୍ତ୍ୟକୁ ? ଅଚିନ୍ତ୍ୟ ଯେ ମୋ ପାଖେପାଖେ ; ଅଗାଧ ମିଥ୍ୟା ଦ୍ୱାରା ବିକୃତ !

ଜୟନ୍ତୀ କ'ଣ ବୁଝିବ 'ଆଂଶିକ ?' ଦେଖିପାରିବ ନିଜ ଛାଇକୁ ? ପ୍ରତ୍ୟେକ ରୂପର ଥାଏ ଗୋଟିଏ ଛାୟା ! ଦେହଟା କଂଚା ପରିବା ! ଟ୍ରେନ୍ ସିଟ୍‌ରେ ଶୋଇ ତୁମ ଗାଁକୁ ଯାଉଥିବା ମୁଁ ଖଣ୍ଡେ କ୍ଲାସିକାଲ୍ ସକାଳ ! ମୁଁ ଏକ ଦେହ ନୁହେଁ, ପାଚି ଟୁଲୁଟୁଲ ସ୍ୱେଦସିକ୍ତ

କିଛିଟା ଯନ୍ତ୍ରଣା ! ମୁଁ ଜଣେ ଦଣ୍ଡିତ ! ନିଜ ସମୟ ବାହାରେ ଜୀବିତ ମୁଁ ଭାନ୍‌ଗୋଘ୍‌ର 'ଲେଟର୍ସ' ! ମୋ ଧର୍ମ ଆର୍ଟ । ମୋ ଜୀବନ ଏକ ଭଙ୍ଗା ଚର୍ଚ୍ଚ ! ଦୁଇ ସହସ୍ର ବର୍ଷ ତଳର ମୃତ ଖ୍ରୀଷ୍ଟ ମୁଁ; ଏବେ ପୁନର୍ଜାତ !

ମୁଁ ସେଇ କୃଷ୍ଣ; ଗୋଟିଏ ଫେରିବାର ବେଳ !. ଭବିଷ୍ୟତ କଥନକ୍ଷମ; ସଂପୂର୍ଣ୍ଣ ସଂଗୀତ !

ସଫେଦ ଓ କୃଷ୍ଣ; ଜୀଇଁବାର ରଂଗ ମାତ୍ର ଦୁଇଟି ! ରଂଗର ଆଇନଷ୍ଟ ଡିଲା କ୍ରୋୟିକ୍ସ ! ରେଁବ୍ରାଣ୍ଡ, ଫ୍ରାଁଜହଲ୍ସ କିମ୍ବା ଭିଲାସ କ୍ୱେଇଜ୍‌କୁ ପଚାରି ବୁଝ ! କୃଷ୍ଣ ସତେଇଶ ପ୍ରକାର ! କୃଷ୍ଣ ରେ ଶ୍ୱେତକୁ ବି ଆଙ୍କି ହୋଇଯାଏ ! ..... ଆଦିତ୍ୟସ୍ୟ କୃଷ୍ଣ ରୂପମ୍ !

X X X

ମୁଁ ସର୍ଜନା କରୁଛି କ'ଣ ?

କୋରିଜିଓଙ୍କ 'ଆଲିଗୋରିକ୍ ଅଫ ସିନ୍' ! କାମୋତ୍ପନ୍ନ ଅନୁଭୂତି ? ଯସ୍ୟ ଛାୟାଃ ମୃତଂ ତସ୍ୟ ମୃତ୍ୟୁଃ !.... ବିନାଶେନ ମୃତ୍ୟୁଂର୍ତୀତ୍ୱା ! ମୃତ୍ୟୁ ନଦୀ ପାରହେବାକୁ ହେଲେ ପ୍ରାପ୍ତ ହେବାକୁ ପଡ଼େ ବିନାଶ ! ପ୍ରେମ ସବୁ ଅଶୁଭ ପ୍ରତିକାରର ଅବ୍ୟର୍ଥ ମହୋଷଧି !

କିଏ କହିଥିଲା; 'ଓମ୍ୟାନ୍ ଇଜ୍ ଦି ଫ୍ୟୁଚର ଅଫ୍ ଦି ମ୍ୟାନ୍ ?' 'ଲୁଇସ୍ ଆରାଗଁ !'

'ସାର୍, ଆପଣ ଝୁଣ୍ଟିଲେ ?' ଜୟନ୍ତୀ ପଚାରିଲା ।

'ନାଁ' ଧନ୍ୟବାଦ୍ । ମୁଁ ମୃତ ମ୍ୟାଡାମ୍ ! କହିଲି ମୁଁ । ଏକ୍‌ଜିଷ୍ଟେନ୍‌ସିଆଲିଜିମ୍ ବୋର୍ କରୁଛି ? ନ କର୍ତ୍ତୃତ୍ୱଂ ନ କର୍ମାଣି ଲୋକସ୍ୟ ସୃଜତି ପ୍ରଭୁଃ !

ହେ ଅଚିନ୍ତ୍ୟ, ପାପ କି ପୁଣ୍ୟ ତୁମେ ତ ଦିଅନା କିଛି ! ଅଜ୍ଞାନେନା ବୃତଂ ଜ୍ଞାନଂ ତେନ ମୂହ୍ୟନ୍ତି ଜନ୍ତବଃ !... ଶୂନ୍ୟ ମୃଣ୍ମୟ ଦୀପ ଅଶୁଭ, ଶବ !

ମରେ କିଏ ?

ଅବ୍ୟବହାର୍ଯ୍ୟ, ଅଲକ୍ଷଣ, ଅଚିନ୍ତ୍ୟ, ପ୍ରପଞ୍ଚୋପଶମ ? ମୃତ୍ୟୁ ତ ସ୍ୱଂୟ ନିର୍ବିଶେଷ, ତୁରୀୟ, ନିର୍ଲିପ୍ତ, ଅଜନ୍ମ ଓ ସ୍ୱୟଂ ସ୍ଥିତ !

ଢାଲ ଭିତରେ ମାଛ ?

ଢାଲ ଉଠାଅ ଜୟନ୍ତୀ !

ସ୍ୱରୂପକୁ ବିସ୍ମରିଯାଇ ଗଛ ଉପରେ ବସିଥିବା ପକ୍ଷୀଟି ମୂକ ! କେମିତି ସିଏ ନଇଁପଡ଼ି ଅଞ୍ଜୁଳି ପାତି ମାଗିବ ଏବଂ ତମେ କଳସୀରୁ ଓଜାଡ଼ି ଦେବ ତା ମୁହଁ ପାଖରେ ଜଳ ?

ଜ୍ଞାନଠୁ ପବିତ୍ର ଅଛି ଆଉ କ'ଣ ?

ତୁମେ ଯଦି କଂଚିମାଳା ହୋଇଥାନ୍ତ ଦେଖାଇ ଦେଇଥାନ୍ତ ବହୁ ସ୍ୱପ୍ନର ଈଶ୍ୱର ଭାସମାନ ଦୁଇଟି ଅବସର୍ତ୍ତ କମନୀୟ ଆବନର୍ମାଲ । ଏକୋସଦ୍.... !

ଯାଜପୁର ରୋଡ଼ ! ଟ୍ରେନ୍ ଠିଆ ହେଲା ! ଏଇଠୁ ତୁମ ଗାଁକୁ ବାଟ । ଟ୍ରେନ୍‌ରୁ ମୁଁ ଓହ୍ଲେଇଚି । ଗୋଟେ ହାତରେ ଆରିଷ୍ଟୋକ୍ରାଟ ବ୍ୟାଗ୍ ଓ ଅନ୍ୟ ହାତରେ ଖଣ୍ଡେ ଖବର କାଗଜ !

ସ୍ଥିତିର ପରିବର୍ତ୍ତିତ ରଂଗ ! ଅସ୍ତିତ୍ୱର ଏକ ଦୁର୍ଲ୍ଲଭ ଘଟଣା.... ନାଟକୀୟ ! ଏଇଠୁ ମୁଁ ବାହାରିଯିବି ପଶ୍ଚିମକୁ ? ଶତାବ୍ଦୀ ଶତାବ୍ଦୀ ବ୍ୟାପି ତୁମକୁ ଦେଖିବାର ତୃଷ୍ଣା ନଈଟିଏ ପରି ଯେମିତି ମୋ ଭିତରେ ଜୀଇଛି ! ଏ ଜୀଅନ୍ତା ନଈକୁ ତୁମ ପାଖରେ ମୁଁ ଛାଡ଼ି ଦେଇଯିବି ? ସବୁ ଦ୍ୱନ୍ଦର ପରମ ସମାଧାନ ହେବ ପ୍ରାପ୍ତି ?

ସେଇ ଅଚିନ୍ତ୍ୟ ଉପଲବ୍ଧି !... ସୁଜାତାର କ୍ଷୀରି, ଚୁନ୍ଦକମାରର ଶୂକର ମାଂସ କୁମାର ଗୌତମକୁ ଦେଲା ଯେଉଁ ତୃପ୍ତି ? ବୁଦ୍ଧତ୍ୱର ବ୍ୟାପକ ଉପଲବ୍ଧି ! ଅନୁତ୍ତରିତ ଏକ ଉତ୍ତର ଶାନ୍ତ କରିଦେବ ସ୍ନାୟୁର ସମୁଦ୍ର ?

ତୁମ ସ୍ୱର୍ଶର ସିଦ୍ଧାନ୍ତ ?... ଜନ୍ମ ଜନ୍ମାନ୍ତରର ତୋଫାନ ଶାନ୍ତ ! ଅସ୍ତିତ୍ୱରେ ଉକୁଟୁଛି ଚନ୍ଦନର ଚାରୁ ଚନ୍ଦ୍ରୋଦୟ ଚିହ୍ନ । ଚେତନାର ପୁଷ୍ପରୁ ପ୍ରସରି ଯାଉଛି ପଦ୍ମଗଂଧ ଯୋଜନ ଯୋଜନ !

ଶାନ୍ତ ମୁଦ୍ରା ବୁଦ୍ଧ ମୂର୍ତ୍ତି ! ମୁଁ ବୁଦ୍ଧ ଠିଆ ହୋଇଛି ! ଆସ, ଆସ ଜୟନ୍ତୀ, ତୁମକୁ ମୁଁ ଦେବି ଧର୍ମର ଶରଣ ! ସଂଘର ଶରଣ ! ଶଂଖରେ ମୁଁ ତୋଳିଦେଉଛି ଅପରିବର୍ତ୍ତନୀୟ ତତ୍ତ୍ୱ; ନିଅ ମୋଠୁ ଉପବୀତ !

ଜନ୍ମ ମୃତ୍ୟୁର ପ୍ରତିଶ୍ରୁତି !

ଭାଗ୍ୟ ମାନବ ପାଇଁ ନୁହେଁ ଦଣ୍ଡ !

ପ୍ରେମ ମୁଁ ଜାଣେ; ଅଭିଳାଷ, ସ୍ନେହ ଓ ପ୍ରଜ୍ଞାର ମିଶ୍ରଣ !

ଆଶା ହିଁ ଦୁଃଖ । ଡନ୍ ଜୁଆନ୍ ଜାଣେ ଏବଂ ତା' ପାଖରେ ନଥିଲା ଆଶାର ସ୍ୱୀକୃତି ! ତେଣୁ ସିଏ ଅତୃପ୍ତିର ଅଲଂଘ୍ୟ ସମୁଦ୍ର ପହଁରୁଛି ! ମଣିଷ ଜୀବନବ୍ୟାପୀ ଖୋଜୁଛି; ଖୋଜିବା ପରିବର୍ତ୍ତେ ଶାନ୍ତି ! ଅର୍ଥାର୍ଜନରେ ରହି ରହି ସିଏ ଭୁଲି ଗଲାଣି ତୃପ୍ତିକୁ ! ତା ବୃହତ୍ତର ଜୀବନ ଅର୍ଥ ଲମ୍ବିଛି ଅଭିଳାଷ ଆଡ଼କୁ !

ଅଭିଳାଷ ଶୂନ୍ୟ ହୋଇଗଲେ ସେ ସ୍ଥାନକୁ ଦଖଲ କରିନିଏ ଆର୍ଟ ! ଜୀବନକାଳ ଭିତରେ ଗୋଟିଏ ବି ଚିତ୍ର ନଆଙ୍କିଥିଲେ ମଧ୍ୟ ଲୋକଟି ହୋଇଯାଏ ଜଣେ ଆର୍ଟିଷ୍ଟ ! ଜଏସ୍‌ଙ୍କ ଷ୍ଟିଫେନ ଡିଡଲସ୍ ! ଜୀବନକୁ ଯେତେବେଳେ ଜଣେ ବୁଝିଯାଏ ସିଏ ହୋଇଯାଏ ଫିଲୋସଫର; ରୋଲାଁଙ୍କ ଜାଁଖ୍ରୀଷ୍ଟୋଫର ! ମଣିଷର ଦାନ୍ତ ପରି ପ୍ରେମ ଦୁଇଥର ଜନ୍ମ ନିଏନି ! ପ୍ରେମର ଥାଏ ଆଖି !

ସେ ଆଖିରେ ଅଭିଳାଷ ନଥାଏ, ଜୟନ୍ତୀ ! ଆଦାମ୍‌ର ବୟସ ମଝିନଈ ଟପିଯାଇଛି; ସିଏ ପ୍ରଦର୍ଶିତ କରୁଛି ତା' ଅନୁଭୂତିର ପାଉତି ! ପାରାଡାଇଜ୍ ହଜିଯାଇଛି, ନାଁ' ଅଭିଳାଷ ପ୍ରଣୟର ପିଛା ଧରିଛି ?

କେଉଁଠି ନାଚୁଛି ଶ୍ରମର ଫୁଲ ? ଦେହତ ନୁହେଁ ଆତ୍ମନିର୍ଯ୍ୟାତନାର ଚିହ୍ନ ! ହୃଦୟର ନୈରାଶ୍ୟରୁ ସୌନ୍ଦର୍ଯ୍ୟ ନିଏ ନାହିଁ ଜନ୍ମ ! ଆଉ ପ୍ରେମ ?

ଅତିରିକ୍ତ ଲାମ୍ପଟ୍ୟର ବୃଥା ଉପଢୌକନ ! ମୁଁ ଖୋଲି ଦେଇଛି ମୋ ହୃଦୟର ପୁସ୍ତକ ! ତାରା, ଚନ୍ଦ୍ର, ମଳୟ ଓ ଆକାଶ ! ବାଇଗିଣୀ ନଦୀସାରା ଶାନ୍ତ ଓ ଅଦ୍ୱୟ ପିଙ୍ଗଳ ବର୍ଣ୍ଣର ମତ୍ସ୍ୟ ରଚେ ଦୁଷ୍ପ୍ରାପ୍ୟ ସୁଖର ସ୍ୱାଦିଷ୍ଟ ଛନ୍ଦ ! ତୁମୁଳ ରକ୍ତିମାରେ ମାର୍ଜିତ କୌତୁକ ! ସହଜାତ ବେଷ୍ଟିତ ଅଥଳ ମୃଗମଦ ମୋକ୍ଷ ପହଁରାଇନିଏ ସାରା ସ୍ନାୟୁ ତା' ମୟୁରପୁଚ୍ଛ । ଜର୍ଜରିଉଠେ ଚକ୍ଷୁ, କର୍ଣ୍ଣ, ପାପୁଲି ଓ ଓଠ ! ଓଃ ସୌନ୍ଦର୍ଯ୍ୟ ! ଚିରସ୍ରୋତା କାମିନୀ ଅଳକାନନ୍ଦା ଚରଣ ନୂପୁର କଣକଣ ରଣରଣ !

ଜୟନ୍ତୀ, ତୁମ ଗାଁ, ଏଠୁ ଆଉ କେତେ ବାଟ ?

ମୁଁ ପାରି ହେଉଚି ନଦୀ ! ଅସ୍ୱାଭାବିକ ଗୋଟିଏ ଏକକକୁ ଭେଦ୍ୟ କରୁଛି ସାବୁନ୍ ବୋଲା ସଂଙ୍ଗମୀ ଆବେଗ ! ପାରି ହେଉଥିବା ନଈଟା ନଈ ନୁହେଁ; ବିଲ୍ୱମଙ୍ଗଳର ଆବେଗ ! ବୋହୁଛି ଦୁଇକୂଳ ଖାଇ ।



# ଅନୁରାଗ ରଙ୍ଗର ଉପପାଦ୍ୟ

ପ୍ରାଚୀନ ଖିଲାଣ ଶିଳ୍ପୀ ଚାଲିଛନ୍ତି ! ତାଙ୍କ ଆଗରେ ବୟସ୍କ ଗୁରୁ । ଗୁରୁଙ୍କ ନିର୍ଦ୍ଦେଶରେ ତାଙ୍କ ହାତରେ ଗୋଟେ ଧନୁ । କାନ୍ଧରେ ତୂଣୀର; ଭର୍ତ୍ତିଶର ! ବ୍ୟବହାର ରହିତ ସବୁତକ ! ପ୍ରାୟଃ ସୁଦୀର୍ଘ ଏକ ବର୍ଷକାଳ ! ଜଣେ ଶିଳ୍ପୀ ପାଇଁ ତା' ଉପକରଣ ବଡ଼ । ନୁହେଁ - ଧନୁଶର !

ତେଣୁ ଗୁରୁ କହିଲେ- ଗୁରୁ ଶିଖାଇଛନ୍ତି ଏଗୁଡ଼ିକ ପାଖରେ ରଖ ଏବଂ ବ୍ୟବହାର କର ନାହିଁ ।

ପ୍ରେମିକ ପାଇଁ ତା' ପ୍ରେମ ବଡ଼ । ତାକୁ ମୁଁ ସାଇତି ରଖୁଚି !

ମୋ ପ୍ରେମ ମୁଁ ତୁମକୁ ଦେଇଦେବି ଜୟନ୍ତୀ ? ନିଜ ଭଲ ପାଇବାକୁ ଦେଇ ଦେବା ପରେ ମୋ ପାଖରେ ଆଉ ରହିବ କ'ଣ ? ଗୋଟିଏ ତୁଚ୍ଛ ମଣିଷର ଜୀବନ ! ସେ ଜୀବନ ମୋର କ'ଣ ହେବ ? ଶୂନ୍ୟତୂଣୀର ନେଇ ଶିଷ୍ୟ ଗୁରୁଙ୍କୁ କେଉଁ ସୁରକ୍ଷା ହେବ ?

ମୁଁ ତୃତୀୟ ବିଶ୍ୱର ମୂର୍ତ୍ତି !

ସାରାଷ୍ଟ୍ରୀଟ ଆକାଶ ପରି ଆଖିର ତାରକା ଭର୍ତ୍ତି ! ବୃଦ୍ଧି ପାଏ ବଂଶ ଏଠି, ଜାତି ଓ ସାମାଜିକ ସ୍ଥିତି । ଖରସୁଅାଁ ସ୍ରୋତକୁ ନିଷେଧ କରିବ କେଉଁ ଟେଲିକାଷ୍ଟ; କେଉଁ ସମବାୟ ପ୍ରଗତି ? କିମ୍ବା କେଉଁ ସାଟେଲାଇଟରୁ ଟେଷ୍ଟଟିୟୁବ୍ ବେବୀ ? ଯୁବତୀ ଏଠି ଧର୍ଷିତା ହୁଏ !

ଧର୍ଷଣର ପ୍ରମାଣ ଥାଏ । ଧର୍ଷକର ପ୍ରମାଣ ନଥାଏ । ଅଭିଯୁକ୍ତକୁ ଦୋଷୀ ବୋଲି ପ୍ରମାଣ ଦେବ କିଏ ? ଆଇନର ସ୍ନାୟୁରେ ଘର କରିଚି କ୍ୟାନସର ! ତୃତୀୟ ବିଶ୍ୱର ମୂର୍ତ୍ତିଟି ଯେ ଜୀବନ୍ତ କିଏ ଦେବ ତା'ର ପ୍ରମାଣ ?

ବାକି ଦୋକାନ ନା' ବିୟୁଟି ପାର୍‌ଲୋର୍ ?

ସବୁଠି ପୋଷ୍ଟକାର୍ଡ଼ମାନଙ୍କ ଭିଡ଼ ! ଆଇସକ୍ରୀମ୍, ଓ୍ୱମ୍ୟାନ୍, ଚାଟ୍ ଓ ଗୁପ୍‌ଚୁପ୍‌ର ଗୋଦାମ ! କିଛି ନାହିଁ ଟଙ୍କାର ଦାମ୍ । ପଇସା ଦେବାକୁ ବି ଧାଡ଼ି; ପ୍ରତୀକ୍ଷାର ଯାତନା ନିର୍ଘାତ୍ !

ମଣିଷ ଅଭାବୀ ହୋଇଯାଇଚି; ମୁଁ ପଚାରିଲି କାହାର ? ଚାମଚରେ ଫାଷ୍ଟଫୁଡ୍ ପାରଲୋରରୁ ଚିକେନ୍ ସୁପ୍ ଢୋକୁ ଢୋକୁ ବାଗଦାଦ ପରି ଦେଖା ଯାଉଥିବା ଯୁବତୀଟି କହିଲା- 'ସମୟର' !

'ସମୟ... ?'

ମୁଁ ସମୟକୁ ଜାଣେନା । ମୁଁ ସଂସାରକୁ ଜାଣେନା । ମୁଁ ଜାଣେ ଭଲ ପାଇବା ! ଏକମାତ୍ର ଭଲ ପାଇବାକୁ ମୁଁ ଜାଣେ । ସେଇଥିପାଇଁ ସମୟ ତା'ରସି ମୋ ବେକ ଚାରିପାଖେ ଗୁରାଇଛି ?

ମୁଁ ବହୁତ ଆଗରୁ ମୃତ, ଜୟନ୍ତୀ ! ମୋ ଦେହରେ ନୂଆ ସଂସ୍କୃତି ; ଇଏ ଇସ୍ପାତୀ ଜୀବନ ! ମୁଁ ମଣିଷ ନୁହେଁ ଗୋଟିଏ ମୂର୍ତ୍ତି ! ମୁଁ ମାନିବିନି ତୁମ ଚାଲିଗଲା ଟ୍ରେନକୁ ! ଏକ୍ସିଡ଼େଣ୍ଟର ସମ୍ଭାବନା ଥିବା ଛକକୁ ! କାରଣ- ମୁଁ ଏକ ଉତ୍ତେଜନା ଭର୍ତ୍ତି ଅହିସାବୀ ରାତ୍ରୀ !

ଓଡ଼ିଶାର କେତେଜଣ ଲେଖକ ମରୁଭୂମି ଦେଖିଛନ୍ତି ?

ତୁମେ ଭୋକ ଦେଖିଚ, ଜୟନ୍ତୀ ?

ମଣିଷର ଭୋକପରି ବେଳକୁ ବେଳ ଲମ୍ବି ଚାଲିଛି ମୋ ଭିତରେ ଗୋଟେ ମରୁଭୂମି !

ମରୁଭୂମିକୁ ବେଳେ ବେଳେ ମୁଁ ଗୋଟାଏ ନାଁ ଦିଏ- 'ମସଜିଦ୍' ! 'ଇତିହାସ' ବି ଡ଼ାକେ ! ସର୍ଟ ଓ କୁଇକ୍ ! ଅସହାୟ ସ୍ତ୍ରୀ ଟିଏ ହୋଇ କାଛକୁ ଆଉଜି କବାଟ ପାଖରେ ବସେ

ଇତିହାସ ! ମସଜିଦ୍ ଡ଼ାକେ ଜଣେ କାହା ନାଁ ଧରି; ମତେ ଯାହା ଦିଶେ ଶୁଣାଯାଏନାହିଁ କିଛି ! ଠିକ୍ ସେମିତି ମୁଁ ତୁମକୁ ଆବାଜ ଦିଏ ! ଖୁବ୍ ଉଚ୍ଚସ୍ୱର ମୋର ! ତୁମକୁ ଶୁଣାଯାଏ ନାହିଁ !! ଟେଲିଫୋନ୍ ଖୁଣ୍ଟପରି ତୁମର ସଫା ମୂର୍ତ୍ତି ସାମାଜିକ ଦଣ୍ଡାୟମାନ ଓ ତା' ଯୋଗାଯୋଗ ବ୍ୟବସ୍ଥାରେ ବ୍ୟସ୍ତ !

ମୁଁ ଏକ ଅନିଶ୍ଚିତ ଅତୃପ୍ତିକର ସ୍ଖଳିତ ବିଳୟ ! ଦାବୀ ସହ ଚାବିର ଥାଏ କି ସଂପର୍କ ?

ବିରକ୍ତିକର ମୁଁ ମୁଠାଏ ଗାଣିତିକ ଚିହ୍ନ ! ଅର୍ଥକୁ ଅତିକ୍ରମ କରି ଯାଇଥିବା ଭ୍ରମ । ଏ ଭ୍ରମକୁ ସୁଧାରି ନେବ ସମୟ ? ଭଲ ନଦେଖା ଯାଉଥିବା ଫୁଲକୁ ପ୍ଲାଷ୍ଟିକ୍ ସର୍ଜରି କରି ସଜାଡ଼ି ଦେବ ? ଦେହର ଝାଳ ଗନ୍ଧକୁ ଟି.ଭି. ବିଜ୍ଞାପନର ସାବୁନ ସଜାଡ଼ି ଦେଲାପରି ଜୀବନକୁ ସଜାଡ଼ି ହେବ ? ନିଷ୍କାମ ଭଲ ପାଇବାର ଅନଶନକୁ ସଜାଡ଼ି ଦେବ ଯାବତୀୟ ସହାୟତା ? ଯେମିତି ସୁଦୀର୍ଘ ପଚାଶ ବର୍ଷ କାଳ ଦଳେ ମଣିଷଙ୍କୁ ହରିଜନ ବୋଲି ପିଠି ଥାପୁଡ଼େଇ ରଖି ଆସିଛେ । ଆମ ମତଲବକୁ ତିଳେ ହେଲେ ନବଦଳାଇ ! ବଦଳି ଯିବ ଘୃଣା ? ତୁମ ଭଲ ପାଇବାକୁ ଚିହ୍ନାଇବ କିଏ ଜୟନ୍ତୀ ?

ଭୋଟବାକ୍ସ, ତୁମ ଚିଠି ନା' ତୁମ କବିତା ?

ଭଲ ଓ ମନ୍ଦ ଏହି ଦୁଇ ଜିନିଷକୁ ଚିହ୍ନାଏ ସାହିତ୍ୟ । ସାହିତ୍ୟ ମନୁଷ୍ୟର ଜୀବନ ବିଶେଷ ! ଜୀବନର ଆଦିମ ଅବଲମ୍ବନ ଓ ପାର୍ଥିବ ଧନ ! ଅସଭ୍ୟତା ଅନ୍ଧକାରକୁ ପୋଛି ନିଏ ସାହିତ୍ୟ । ସ୍ୱାଧୀନତା ପରେ ସୁଦୀର୍ଘ ପଚାଶ ବର୍ଷ ଧରି ଯାହା ସବୁ ଲେଖାଯାଇଛି, ସେ ସବୁ ଲେଖିଛନ୍ତି ସରକାରକୁ କଲମ ବିକି ଦେଇଥିବା ଦଳେ ଗରିବ ! ସେମାନଙ୍କ ଭୋକିଲା ପାଟି ଆଗରେ ବନ୍ଧା ଯାଇଛି ଟଙ୍କାର ପଟି ! ସେମାନଙ୍କ ଲୋଭିଲା ଆଖିରେ ବନ୍ଧାଯାଇଛି ପ୍ରମୋଶନ୍, ବାର୍ଷିକ ଅଭିବୃଦ୍ଧି, ବଦଳି ଓ ଗୁପ୍ତ ଚରିତ୍ର ପଞ୍ଜିକାର ଅନ୍ଧ ପୁଟୁଳି ! ତୁମେ ସେମାନଙ୍କ ପାଖକୁ ଯାଇପାରିବନି ! ଲୁହାଗେଟ୍ ଓ ଦରୁଆନ୍‌କୁ ଟପିବାକୁ ଦରକାର ହୁଏ 'ପାଶ୍' ! ପରିମିଶନ୍ ! ତୁମ ପାଖକୁ ସେମାନେ ଆସି ପାରିବେନି । ମଝିରେ ଠିଆ ହୋଇଛି ଭୟ । ବଖରା ଭିତର ସୁଖ, ତିରିଶ ବର୍ଷ ପରେ ପେନସନ୍ ଓ ତିରିଶ ବର୍ଷ ଭିତରେ ଯେଉଁ ଲୋଭନୀୟ ଆୟ ତାକୁ ଛାଡ଼ିବ କେଉଁ ଅନ୍ଧ ?

ମୂର୍ତ୍ତିର ଆଖିଥାଏ, ଜୟନ୍ତୀ ! କିନ୍ତୁ ସେ ଆଖିରେ କିଛି ଦେଖାଯାଏ ନାହିଁ । ସେ ଆଖିକୁ ଦେଖନ୍ତି ସମସ୍ତେ । କିନ୍ତୁ ସେ ଆଖି କାହାକୁ କି ଦେଖେ ?

ମୁଁ ଲୁଚିଗଲିଣି ଅସନ୍ତୋଷର ଭୋଟ ବାକ୍ସ ଭିତରେ ! ସତ୍ୟାନନ୍ଦ ବେଉରାଙ୍କ 'ଶ୍ରୀମତୀ ନାଏକଙ୍କ ବୈଠକଖାନା'ରେ, ବୈଷ୍ଣବ ଚରଣଙ୍କ 'ମନେ ମନେ' ? ମୁଁ 'ମଲାଜହ୍ନ' ଉପେନ୍ଦ୍ର କିଶୋରଙ୍କର ମୁଁ ନୁହେଁ ଜୟନ୍ତୀର ପ୍ରିୟ ପୁରୁଷ ? ମନର ମଣିଷ ! ମୁଁ ଅଭିଶପ୍ତ । ନିଜଠୁ ନିଜେ ପଳାତକ । ମୂର୍ତ୍ତି କି କାହାର ହୋଇପାରେ ପ୍ରେମିକ ?

ହଁ, ଠାଏ ଜ୍ଞାନୀନ୍ଦ୍ର ବର୍ମା କେଉଁଠି ଲେଖିଛନ୍ତି ! ପ୍ରାଚୀନ ରୋମ୍‌ରେ ସମ୍ରାଟଙ୍କ କୁମାରୀ ଦୁହିତା ଓ ଦୋହିତ୍ରମାନଙ୍କ ଥିଲା ପ୍ରିୟ ପୁରୁଷ ନଗ୍ନ ପ୍ରସ୍ତର ମୂର୍ତ୍ତି । ମଣିଷପରି ତା'ଠୁ ଆଦାୟ କରୁଥିଲେ ସୁଖ ! କୋଣାର୍କରେ ଏତେ ଯୁଗନଦ୍ଧ ! କେମିତି ଆଙ୍କିଲେ ଏ ମୂର୍ତ୍ତି ନିଜ ନିହାଣରେ କାଳଜୟୀ ଶିଳ୍ପୀ ? ତତ୍‌କାଳୀନ ସମାଜରେ କ'ଣ ନଥିଲା ଶବ୍ଦଟିଏ 'ଅଶ୍ଳୀଳ' ବୋଲି ଯେମିତି ରାଜସ୍ଥାନୀ ଚୋଲୀ !

କଳାରେ ଆବେଗ ପରିଧାନ କରିଛି ଅଦୃଶ୍ୟ ପୋଷାକ ?

ସିନେମା ବଣ୍ଡିଟ୍‌କ୍ୱିଇନ୍‌ରେ ତ ପୁଣି ସୀମା ବିଶ୍ୱାସକୁ ଲଙ୍ଗଳା କରାଇ ଶେଖର କୂଅରୁ କଢ଼ାଇଲେ ପାଣି ଏବଂ ସେ ପାଣି କଳସ ଧରିଥିବା ନଗ୍ନ ଯୁବତୀ ଚୁଟିଧରି ସାରା ଗାଁ ବୁଲାଇଥିଲା ଠାକୁର ଭିଲିଆନଟି !

ତାକୁ ତ ଆମେ ବଡ଼ ପର୍ଦ୍ଦାରେ ଦେଖିପାରିଚୁ !

ଯୀଶୁ କୁଆଁରୀ ଗର୍ଭର ଫଳ !

ଈଶ୍ୱର ମଣିଷ ଭିତରେ ସ୍ଥାପନ କଲେ ଯେଉଁ ବିପୁଳ ପ୍ରେମ ତାହା କେମିତି ହେଲା କଳଙ୍କିତ; ପାପ ହାନୀକଲା ପୂଣ୍ୟ ! ହେଲା ଅସାମାଜିକ । ମଝିରେ ଆବଶ୍ୟକ ହେଲା ବିବାହର ଦଣ୍ଡିଆଗିରି !

ଜୟନ୍ତୀ, ଗତକାଲି ମୁଁ ତୁମକୁ ଭଲ ପାଉଥିଲି ! ଆଜି ଆମେ ଦୁହେଁ ଦୁହିଁକୁ ! ତୁମ ଭଲ ପାଇବାର ଫୁଲ ତୋଡ଼ା ପାଇ ମୁଁ ନିରୀହ ପାପୀ, ନିଷ୍ଠୁର ଅଭାବୀ, ହୋଇଯାଇଛି ଧନୀ ! ସନ୍ଥଟିଏ ପରି ଜ୍ଞାନୀ ଓ ଜ୍ଞାନ ମୁକ୍ତା ଦାନ ନେବାପାଇଁ ବଡ଼ପଣ୍ଡା ପାତିଛନ୍ତି ପାପୁଲି ! ମୋ ଭଲପାଇବାର ରତ୍ନ ଦେଇଦେବି ? ଦଧୀଚି ଦେବ ତା ଅସ୍ଥି ? ଦେବ ? ଓଢ଼ଣା ଆବୃତ୍ତ ନନ୍‌ଟିଏ ପରି ସଂସାର ପବିତ୍ର ଓ ସୁନ୍ଦର ଦିଶୁଚି । ତୁମ ହସ ମଧୁମକ୍ଷି ଗୁଞ୍ଜନ ପରି ମତେ ସନ୍ତୁଷ୍ଟ ଓ ସମ୍ମୋହିତ କରିଛି ।

ପ୍ରେମିକ ସବୁବେଳେ ସମ୍ରାଟ । ସିଏ ଦାନକରି ଦେଇ ଜାଣେ; ତାର ସବୁକିଛି ! ଖାଲି ନିଜର ଅଭାବ ବ୍ୟତିତ । କେହି କି ନିଏ କାହାର ଦାରିଦ୍ର୍ୟ ? କିଏ ନେଇ ପାରିବ ମୋର ଦୁର୍ଭାଗ୍ୟ ?

କଳାକାର ହିଁ ସଂସାରର ମହାପୁରୁଷ । ବସୁଦେବ ପରି ବନ୍ଦୀ ସିଏ ! ବର୍ଷଣ ମୁଖର ଭୟାନକ ନିଶାର୍ଦ୍ଧରେ ବନ୍ଦୀଗୃହ ଟପି ମଥୁରା ପାର ହୋଇଯାଏ ! ଟପିଯାଏ ପୂରନ୍ତା ଯମୁନା ! ସଂସାରର ସୁଖ ପାଇଁ ଦୁଃଖ ସିଏ ଟୋକେଇରେ ପୂରାଇ ମୁଣ୍ଡରେ ବହିନେଇଯାଏ !

....ମୁଁ ସେଇ ଭାନ୍‌ଗୋଘ୍, ମୁଁ ସେଇ ଭୋକିଲା ମୁର୍ତ୍ତି ! ମୁଁ ଆଙ୍କିଛି ଗର୍ଭବତୀ ପତିତା କ୍ଲାସିନା ମାରିଆର ନଗ୍ନ ଲିଥୋଗ୍ରାଫ ଛବି- 'ସରୋ' ! ଦୁଃଖ । ସରକାରକୁ କଲମ ବନ୍ଧାଦେଇଥିବା ଲେଖକ ଦେଖିଛନ୍ତି ଦୁଃଖ ? ଜରାସନ୍ଧର ଦ୍ୱାରପାଳ ଥିଲା ଗୋଟେ ଗଧ । ଆଗନ୍ତୁକକୁ ଦେଖିଲେ ଆକ୍ରମଣ ପୂର୍ବରୁ କରେ ଭୟାନକ ରାବ । ଯେମିତି ଶଙ୍ଖ ନାଦ ! ତୁମ ସମୟ ଏକ ଶଙ୍ଖନାଦ ସେଇ ଗଧର ? ତାର ମୃତ୍ୟୁ ଅନିର୍ବାଯ୍ୟ ।

ପ୍ରଶଂସାର ଋଣରେ ଋଣୀ ହେବା ରୋଗୀ ନୁହେଁ ଶିଳ୍ପୀ । ଋଣ ପରିଶୋଧ ପାଇଁ ଭାନ୍‌ଗୋଘ୍ ବଢ଼ାଇ ଦେଲେ ପଟେ କାନ ସ୍ୱହସ୍ତରେ କାଟି !

'ମୋ ଏଇ କାନଟା ତୁମକୁ ସୁନ୍ଦର ଦିଶୁଚି; ମୋ ଛବିଠୁ ? ତେବେ ନିଅ, ତୁମକୁ ଏଇଟା ପ୍ରେଜେଣ୍ଟ କଲି, କ୍ଲାସିନା !'

ଗଣିକାଠୁ ନୀଚ ପିଅନଟା ? ନା, ନିଜେ ତୁଇ; କୁତ୍ସିତ ସମୟ ! ଗଧ ମୁହଁରେ କୃଷ୍ଣ ଭର୍ତ୍ତିକରିଦେଲେ ଗୋଟେ ଶଙ୍ଖ !! ସଂସାର ବିବେଚନା କଲା - ଭାନ୍‌ଗୋଘ୍ ଖୁବ୍ ବଡ଼ ! ସିଏ କାହିଁକି ହେଲେ ଏତେ ବଡ଼ ?

ଲଣ୍ଡନରେ ହେଲା ଇଂପ୍ରେସିଓନିଷ୍ଟ ଆର୍ଟିଷ୍ଟଙ୍କ ଚିତ୍ର ପ୍ରଦର୍ଶନୀ । ଭାନ୍‌ଗୋଘ୍, ଗୋଗୁଁଇ, ସିଜାନୀ ଓ ପିକାଶୋ; ସେଇ ପ୍ରଦର୍ଶନୀର ଦ୍ୱାର ଦେଇ ବଦଳାଇଦେଲେ ବିଶ୍ୱସାହିତ୍ୟ । କବିତାରେ ଇଲିୟଟ୍, କଥା ସାହିତ୍ୟରେ ଜଏସ୍, ମାର୍ଶାଲ ପ୍ରାଉଷ୍ଟ ଓ ଭର୍ଜିନା ଉଲଫ୍ ବଦଳାଇ ଦେଲେ ଇତିହାସ । ବଦଳିଗଲା ଯୁଦ୍ଧୋତ୍ତର ପୃଥିବୀର ସଂସ୍କୃତି । ସେ ସଂସ୍କୃତିର ପୁଞ୍ଜି ବିଶ୍ୱର ସମସ୍ତ ଭାଷାର ସାହିତ୍ୟରେ ପାଣି ଆଜି !

କଂଚିମାଳାପରି ଯୁବତୀ, ଏ'ପରି ଚପଳମତି ଓ ସରକାର ଠାରେ ବନ୍ଧକ ରଖିଥିବା କଲମର ଶିଳ୍ପୀ ଜୀବନ ଦେଖି ନାହାନ୍ତି ! ଦେଖିଲେ କେଉଁଠି ? ସେମାନେ ମଣିଷର ସଂସାରକୁ ଜାଣି ନାହାନ୍ତି । ଯାହା ଜାଣିଛନ୍ତି, ଯାହା ଦେଖିଛନ୍ତି, ତାହା ସଂସାରର ଏକ ଅଲଗା ଚିତ୍ର ! ସେ ଚିତ୍ର ଆଙ୍କି ପାରିବନି ଗର୍କୀ କିମ୍ବା କାର୍ଲମାର୍କ୍ସ ! ର୍ୟାମ୍ବୋ କି ସାର୍ତ୍ରେ ! ଏମାନେ ଦେଖିଛନ୍ତି ଅଭାବକୁ । ଅସୁରକୁ ! ଅସୁର କେବେ ଆସେ ନାହିଁ ସରକାରୀ ଦପ୍ତରକୁ ! ଯେଣୁ ଦପ୍ତର ଚାରିପଟ ସୁରକ୍ଷିତ ଓ ସଂରକ୍ଷିତ ବାଡ଼ !

ଘର ମାଲିକ ଝିଅ ଉର୍ସୁଲା ଲୋଏର୍ । ନାରୀ ଦେହରେ ଥାଏ ଯାହା, ତା'ଠୁ ଅଲଗା ଥିଲା ଆଉ କିଛି ତା' ଦେହରେ ? ଯାହାକୁ ହେଲେ ବି ଜଣେ ପୁରୁଷକୁ ନାରୀ ସମର୍ପଣ କରେ ତା' ଦେହର ପୁଞ୍ଜି ! ସେ ପୁଞ୍ଜିକୁ ଆଦର କରୁଥିବା ପୁରୁଷକୁ କାହିଁକି ହତାଦର କରି ଭିନ୍ନ ଏକ ପୁରୁଷକୁ ସିଏ ସମର୍ପିତ କରାଇ ଥାଏ ତା' ସବୁକିଛି ! ଶିଳ୍ପୀ, କବି, ସାହିତ୍ୟିକ ଓ ସବୁ ଚିନ୍ତାନାୟକ ଭଲ ପାଇଥାନ୍ତି ସେଇ ପାଷାଣୀ ନାରୀକୁ, ଯେଉଁ ନାରୀ ଭଲ ପାଇ ନଥାଏ ତାଙ୍କୁ ! ଭଲ ପାଉଥିଲେ ବି ଦୂରେଇ ଯାଇଥାଏ ପର କରି ସେହି ପ୍ରିୟ ପୁରୁଷକୁ ! ଉର୍ସୁଲା ରୋକ୍‌ଠୋକ୍ ଚିରି ଦେଲା ଅନାବଶ୍ୟକ ଚିଠି ପରି ଭାନ୍‌ଗୋଘ୍‌ଙ୍କ ଆକାଂକ୍ଷା । ପାହାଡ଼ ପରି ଭାରି ମନଟା ଫାଟି ପଡ଼ିଲା । ଚୂର୍ଣ୍ଣ ବିଚୂର୍ଣ୍ଣ ତୃଷ୍ଣା ନଈ ହୋଇ ସବୁ ସ୍ନାୟୁ ଦେଇ ବୋହିଗଲା ବ୍ରହ୍ମ ଘରକୁ । ମୁହଁ ଓ ମୁଣ୍ଡ ଭିଜିଗଲା ଝାଳରେ ।

'ଠାକରା ଗାଲ । ବାହାରି ପଡ଼ିଛି ହନୁ ହାଡ଼ । ଡ଼େଙ୍ଗାଟା ! ଡ଼ାହାଣ ଲେଖା ଦାନ୍ତ ଗୁଡ଼ାକ ! ପାଚି ଆସିଚି ଗୋଟାଗୋଟା ବାଳ । ନିଜ ମୁହଁ ଆଗରେ ଦର୍ପଣ ରଖ । ନିଜକୁ ଥରେ ଦେଖ ! ତା' ପରେ ଯାଇ ଆଣ ତମ ଭଲ ପାଇବା ପ୍ରସ୍ତାବ । ଛି...ଛି, କି କୁତ୍ସିତ ! ଫୁଲପରି ସୁନ୍ଦର ଓ କୋମଳ ଗୋଟେ ଝିଅ ତୁମକୁ ଭଲ ପାଇବ ? ନା, ନା, ମୋଟେ ନୁହେଁ, ତୁମେ ମୋ ଭଲ ପାଇବା ଅଯୋଗ୍ୟ !'

ଖଇର ରଙ୍ଗର କଲିଜାକୁ କୁଟ୍‌କୁଟ୍ କରି କାଟିଦେଲା ଉର୍ସୁଲା ।

ଅତ୍ୟନ୍ତ କ୍ଷୋଭରେ ସହର ଛାଡ଼ି ପଳାୟନ କଲେ ଶିଳ୍ପୀ । କ'ଣ ନେଇ, ଏ ସହରରେ କେମିତି ବଞ୍ଚିବ ଜଣେ ଆର୍ଟିଷ୍ଟ ? ଚାଲିଗଲେ 'ଇଟନ' ! ଅଜ୍ଞାତ ନାଗରିକଟିଏ ହୋଇ କାଳେ ବଞ୍ଚିଯାଇ ହେବ !

ସେଠି ବି ଆସିଲା ବସନ୍ତ । ମଳୟ ଖେଳାଇ ଦେଲା ତା' ସୁବାସ । ପରାଗ ରେଣୁ

ବିଛେଇ ହୋଇପଡ଼ିଲା ମନର ସାରା ବଗିଚା । ଥୁଣ୍ଟା ଶାଖାରେ ଡାକିଲା କୋଇଲି ! ଅମାନିଆ ହରିଣଟିଏ ଖୋଜି ଖୋଜି ଚାଲିଲା ଜହ୍ନରାତି ଭଳି ପାଚିଲା ଓ ପୂରିଲା ସୁହାଗ ରଂଗର ଝରଣାଟିଏ ! ଏବଂ ପାଇଲା ବି !

'କୀ ଷ୍ଟ୍ରିକର ଉସ୍'- ସେଇ ନାରୀ ! ଦୂର ସଂପର୍କିୟା ବିଧବା ଯୁବତୀ ! ଯେମିତି ଗୋଟେ ଜହ୍ନପକା ରାତି ! ମନର ବନ୍ଦ ଲଫାପା ଖୋଲି ଦିନେ ତାକୁ ଦେଖାଇ ଦେଲେ ଶିଳ୍ପୀ !

''ଜୟନ୍ତୀ, ପଢ଼, ପଢ଼ ଏଇ ଚିଠି ! ଚିଠି ନୁହେଁ ଇଏ ! ଛବିବହି ଗୋଟିଏ ! ତାକୁ ମୁଁ ତୁମକୁ ଦେଇ ଦେଇଛି ! ବହିସାରା ଯେତେ ଛବି ସବୁ ତୁମରି । ଏମ୍.ଏଫ୍.ହୋସେନର 'ଦାମିନୀ' ! ତୁମ ସାମ୍ନାରେ ସୁବର୍ଣ୍ଣର ଭିକ୍ଷା ପାତ୍ରଟିଏ ଧରି ଯେଉଁ ପୁରୁଷଟି ବସିଛି ସିଏ ତୁମ ପ୍ରେମର ଭିକାରୀ ! ତା' ଆଗରେ ମେଲା ବହିଟିଏ ପବନରେ ଉଡୁଛି ! ତାହା ତୁମ ଯୌବନ-ଗୀତା ! କି ପୁଲକିତ ପ୍ରାଣ ! ପୁରୁଷଟି ପଢୁଚି ତୁମ ପ୍ରଣୟ ଗଜଲ !''

ଭଲ ପାଇବାର ସବୁଜ ଗଛରେ ଭରପୂର ଅରଣ୍ୟ । ସଂଜ ନଇଁଲେ ସିନା ଘୂରି ବୁଲନ୍ତି ବାଘ ! ଜଗି ବସନ୍ତା ଶିକାରକୁ ! କିନ୍ତୁ- ଦିବସର ତରଳା ସୁନାକୁ ଖାଉଥିବା ଇଛାର ବାଘୁଣୀ ଗୁମ୍ପା, ନଈ ଓ ବନକୁ କମ୍ପାଇ କଲା ଗର୍ଜନ ! 'ନା, ନା, ମୋଟେ ନୁହଁ ! ତୁମ ଅନାବୃତ୍ତ ସ୍ୱପ୍ନ ଜମା ଜହ୍ନରାତି ନୁହେଁ, ଗୋଟେ ଭୟାନକ ଅଜଗର । ଏ ମାଁ ! ମତେ ଖାଇଯିବ... ଖାଇଯିବ !'

ପ୍ୟାରିସ୍ ଛାଡ଼ି କୀ ଷ୍ଟ୍ରିକର ଚାଲିଗଲା ଆମେଷ୍ଟ୍ରାଡ଼ାମ !

ପାଖରେ ପଇସା ନାହିଁ । ସାଲୁବାଲୁ ଅଭାବର ଅନ୍ଧାରରେ ଭର୍ତ୍ତି ଜୀବନ ବଖରା ! ଭୋକ ତରଳୁଛି ଜଳନ୍ତା ଆଖିରୁ, ଓଠରୁ ଓ ଦଳିମକ୍ଷି ଫମ୍ପା କୁଞ୍ଚିକୁଞ୍ଚିଆ ପାକସ୍ଥଳୀରୁ ! ବହୁ କଷ୍ଟରେ ଧାର ଉଧାର କରି ଭାନ୍‌ଗୋଘ୍ ଗଲେ ଆମେଷ୍ଟ୍ରାଡାମ୍ ! ପୁଣି ଏକ ଡାଇନିଂ ଟେବୁଲ୍‌ରେ ହେଲେ ଏକାଠି । ପ୍ରସ୍ତାବ ପୁଣି ଥରେ କଲେ ଉପସ୍ଥାପିତ । କକ୍ଷ ତ୍ୟାଗ କରି ଦୌଡ଼ି ପଳାୟନ କଲା କୀ ! ଜଳନ୍ତା ଲ୍ୟାମ୍ପ ଶିଖା ଉପରେ ତିନି ତିନି ଥର ପାପୁଲି ଚାପି ରଖିଲେ ଭାନ୍‌ଗୋଘ୍ !

'କୀ, ତମେ ଯଦି ମୋ ପାଖକୁ ନଆସିବ ମୁଁ ଏମିତି ନିଜକୁ ଜୀବନ୍ତ ଜାଳିଦେବି ! ଦେଖ, ମୋ ପାପୁଲି ଜଳୁଛି କେମିତି; ନ ଆସ ତମେ ! ନ ଆସ.... !'

ଶିଳ୍ପୀ ଅତିରିକ୍ତ ଆବେଗ ଦୀପ୍ତ ପାଗଳ ! ଭଲ ପାଇବା ହୃଦୟଟି ଭିତରେ ସୃଷ୍ଟି କରିଛି କି

ଉଦ୍‌ବେଳନ ! ମଣିଷଟି ଢାଳି ଦେଉଛି ନିଜକୁ ଜୀବନ୍ତ; କ'ଣ ତୁଚ୍ଛ ରକ୍ତ ମାଂସର ଦେହଟିକୁ ଶଯ୍ୟାରେ ଗଡ଼େଇ ତଡ଼େଇ କିଛି ସମୟ ଦଳା ମକଚା ପାଇଁ ? ଏତେ ଅଭାବ !!...

ଅତୃପ୍ତ ତୃଷ୍ଣାତୁର ଏଇ ମଣିଷମାନେ ସମୃଦ୍ଧ କରିଛନ୍ତି ବିଶ୍ୱ କଳା ଓ ସାହିତ୍ୟ ! ଯାହାକୁ ପାଇ ଦେଶ ଓ ଜାତି ଗର୍ବିତ ! ସଭ୍ୟତା ଉର୍ଦ୍ଧ୍ୱମୁଖ ! ସେମାନଙ୍କ ଅଧାଜଳା ଜୀବନ ରହି ଯାଇଛି ଅମାର୍ଜିତ କାହାଣୀସିକ୍ତ ! ଗର୍ବିତ ସଭ୍ୟ ନାଗରିକ ଆର୍ଟିଷ୍ଟକୁ ଦେଇଛନ୍ତି କ'ଣ ? ଦଧୀଚି ସ୍ୱାର୍ଥପରମାନଙ୍କଠୁ ପାଇଛି କ'ଣ ?

ଶାଗୁଣା ସମସ୍ତଙ୍କ ମାଂସ ଖାଏ, ତା' ମାଂସକୁ ଖାଇବ କିଏ ?

'ଆଇ ମଷ୍ଟ ହାଭ୍ ଏ ଓ୍ୱମ୍ୟାନ୍ ଅର ଆଇ ଶାଲ୍ ବ୍ରୀଜ୍ ଏଣ୍ଡ ଟର୍ଣ୍ଣ ଷ୍ଟୋନ୍ !' ମୋର ନାରୀଟିଏ ଦରକାର; ନାରୀଟିଏ, ତା' ନହେଲେ ମୁଁ ଜମାଟ ବାନ୍ଧିଯିବି, କିମ୍ବା ପଥର ପାଲଟିଯିବି ! ଖୁବ୍ ଚିତ୍କାର କଲେ ଭାନଗୋଘ୍ । ପବନରେ ଉଡ଼ିଗଲା ପୁରୁଷର ଆକୁଳ ଅଭିଳାସ ! ସବୁ ଜମାଟବନ୍ଧା ତୃଷିତ ଅଭିପ୍ସା ମରୁବାଲି ପରି ଶୁଷ୍କ ଓ ହତାଶ ପ୍ରାଣ ! ଟିକିଟିକି ଦୂଷିତ ଇଚ୍ଛାମାନଙ୍କୁ ଲାଳନ ପାଳନର ରଙ୍ଗରେ କଲେ ଅଂକନ । କଅଁଳିଲା ଜୀବନ ? ନା !

ଗର୍ଭବତୀ କଳାସିନା ହେଲା ତାଙ୍କ ପ୍ରିୟ ପ୍ରେୟସୀ ! ବରଂ ତା'ଠୁ ବଞ୍ଚିବା ତୃଷ୍ଣାରେ ବରିନେଲେ ମୃତ୍ୟୁ ପାପୁଲି ପାତି ! ଶେଷକୁ ପାଦ ଗୋଦର ! ଦେହରେ ବାତର ବେଦନା ଅକଥ୍ୟ ଓ ମସ୍ତିଷ୍କରେ ଅସୁସ୍ଥତାର ଘଞ୍ଚ ତାଳପତ୍ର ବିସ୍ତାରିଛି ତା'ର ନୀଳ ଓ ହରିତ ଛାୟାଛତ୍ର ! ୧୮୯୦ ମସିହା ସେଦିନ ଜୁଲାଇ ୨୯ । କଳା ପାଇଁ ମହାପୁରୁଷ ଏଇ ମହାତ୍ମା ଗୁଳି ଫୁଟାଇ କଣା କରିଦେଲେ ନିଜ ପାକସ୍ଥଳୀ ।

'ହେ ଅପ୍ରିୟ ପୃଥିବୀ, ମୋର ଆଉ ତୁମର ଦରକାର ନାହିଁ । ବାସ୍, ଏତିକି । ଧନ୍ୟବାଦ୍ ତୁମକୁ ।'

ଭଲପାଇବା ଏକ କନ୍‌ସସ୍‌ନେସ୍; ଗୋଟିଏ ଚେତନା ! ସେ ଚେତନାଟି ଯେତେବେଳେ ସୁବିସ୍ତୃତ କରେ ତା'ର ବାଇଗିଣୀ ଡେଣା, ବ୍ୟକ୍ତି ତା' ମାନବୀୟ ବ୍ୟକ୍ତିତ୍ୱଠୁ ହୋଇଯାଏ ଅଲଗା । ସଂସାରଠୁ ଅଲଗା କରିନିଏ ନିଜକୁ । ସମୁଦ୍ର ଭିତରେ ଲୁକାୟିତ ହୀରା ସଦୃଶ; ଖୋଜି ବୁଲୁଥାଏ ପ୍ରାପ୍ତ ହେବାକୁ ସଂପର୍କଟିକୁ ! ସେ ସଂପର୍କର ଅମୃତ ଥରେ ଯଦି ପିଇ ଦିଏ ବ୍ୟକ୍ତିତ୍ୱ; ତା' ମୁଣ୍ଡ କାଟିଦିଆଗଲେ ମଧ୍ୟ ରାହୁ ଓ କେତୁ ପରି ସିଏ ରହେ ଜୀବନ୍ତ ! କ'ଣ ପାଇଁ ତୁମକୁ ମୁଁ ଚାହୁଁଚି, ଜୟନ୍ତୀ ? କାହିଁକି ପୁରୁଷ ଖୋଜେ ଜଣେ ନାରୀକୁ ? ବଜାରରେ

ସଂଭୋଗ କ'ଣ ବିକ୍ରୀ ହେଉନାହିଁ ! ଏ ସମାଜ ଏତେ ଶୁଦ୍ଧ ହେଲା କେବେଠୁ ? ସଂଭୋଗ ଅପେକ୍ଷା ପୁରୁଷର ବେଶୀ ଆବଶ୍ୟକ ଥାଏ ଜଣେ ନାରୀର ସହାନୁଭୂତି ଓ ସମର୍ଥନ ତା' ଜୀଇବା ପ୍ରତି ! ସମସ୍ୟା ଘେରା ତା' ପୃଥକ ଅବସ୍ଥା ପାଇଁ ଦରକାର ହୁଏ ସପୋର୍ଟ ଓ କଂଫର୍ଟ; ଜଣେ ନାରୀଠୁ ! ଯିଏ ତା'ର ଅନୁବର୍ତ୍ତୀ ହେବ ! ସିଏ ଯାହା ଚାହିଁବ ଓ କରି ଯିବ ତା' ପ୍ରତି ତା'ସମର୍ଥନ ଦେବ ! ଆହା' କହି ସମୁଦ୍ର ଭିତରକୁ ଖସାଇ ଦେଇ ପାରିବ ଲଙ୍ଗର !

ସମସ୍ୟା ଜୁଆରରେ ସଂସାର ସମୁଦ୍ରରେ ଟଳମଳ ହେଉଥିବା ପୁରୁଷ ଜାହାଜଟି ହୋଇଯିବ ସ୍ଥିର । ଝଡ଼କୁ ସମ୍ଭାଳି ନେବାକୁ ପାଇଯିବ ବଳ ! ସେଇଥି ପାଇଁ ' ମ୍ୟାନ୍ ନିଡେଡ୍ ଏ ଓ୍ୱମ୍ୟାନ୍ !'

ସମ୍ଭୋଗଠୁ ବଡ଼ ତା' ସହଚର୍ଯ୍ୟ ! ହାତଧରି ଚାଲିବାର ସୁଖ !

ସେଇଥିପାଇଁ ତୁମକୁ ମୁଁ ଚିଠି ଲେଖିଚି, ତୁମେ ଆସି ମତେ ବାଟରୁ ପାଛୋଟି ନେବ ! ଘାଟ ଉଠିବ । ପଞ୍ଝାରି ଥିବା ଆମେ ଦୁଇ । ଆମ ପଛରେ କାତ ଭିଡୁଥିବ ନାଉରି ! ତୁମେ ବସିଥିବ ମୋ ପାଖରେ । ଖରା ହେତୁ ତୁମ ମୁଣ୍ଡରେ ପଡ଼ିଥିବ ପଣତ । ମୋ ମୁଣ୍ଡରେ ମୁଁ ଭିଡ଼ିଥିବି ରୁମାଲ । ଆଖିରେ ଗଗଲସ୍ । ଅନେଇଥିବି ଚକ୍ର ବାଳକୁ । କେତେବେଳେ କେମିତି ତୁମ ମୁହଁକୁ, ଓଠକୁ ଓ ଗାଲ ଯୋଡ଼ିକୁ ! ତୁମେ ଆବୃତ୍ତି କରୁଥିବ କବିତା ଖାତାରୁ ତୁମ ଭଲପାଇବା ! ମନ ଦେଇ ମୁଁ ଶୁଣୁଥିବି । ପବନ ବାରମ୍ବାର ପୋଛି ଦେଉଥିବ ମୋ ମୁହଁ ଓ କାନ । ଯେମିତି ଗୋଟେ ଲମ୍ବା ଓଦା ଟାଓ୍ୱେଲ !.....

ତୁମେ ଦୂର ଗାଁର ଜହ୍ନ !.... ମତେ ଡାକିଛି !

ଅନୁରାଗ ରଂଗର କାଳିରେ ଚିତ୍ରକଳ୍ପକୁ ରଂଗେଇ ଆର୍କିଟାଇପଟିଏ ତିଆରି କରିଛି । ମାଛପରି କି ଏକଚାକଟ ! ସ୍ନିଗ୍ଧ ଆଲିଙ୍ଗନ ପରି କି ନିର୍ନିମେଷ ! 'ମାନସ ଭାଇ, ତୁମେ ଆସିବ ! ଏବେ ଆମ ଗାଁ ନଈ ପାଣି ଗୋଳିଆ ହୋଇ ଯାଇଛି ! ଡଙ୍ଗା ଅଛି । ବାଟକୁ ନ ଗଲେ ବି ତୁମେ ଠିକ୍ ଆମ ଘରେ ପହଞ୍ଚି ପାରିବ; ମୁଁ ଜାଣିଛି । ଆସିବ, ତୁମକୁ ମୋ ରାଣ !' ଜୟନ୍ତୀ ଚିଠି ଲେଖିଛି ।



## ଜହ୍ନି ଫୁଲ ଠୋ ଠା ... ମଧୁ କ୍ଷରନ୍ତି ସିନ୍ଧବଃ !

ଗାଁ ମୁଣ୍ଡ ! ସାମ୍ନାରେ ଘନନୀଳ ବୁଢ଼ା ବରଗଛ ! ତା' ପଛକୁ ଗୋଟେ ସଫେଦ ଦେଉଳ ! ତା' ଉର୍ଦ୍ଧ୍ୱରେ ଫରଫର୍ ଉଡୁଛି ଏକ ଦୀର୍ଘ ଚିରାଳ; ପବନର ଜିଭ ! ସରୁ ଚଲାବାଟ ଟପି ଗଲାପରେ ଗ୍ରାମପଥ ! ନାଲି କସ୍ତାପରି ଲମ୍ବ ଓ ପ୍ରଶସ୍ତ ! ଟିକିଏ ଆଗକୁ ଧାଡ଼ି ଧାଡ଼ି ଘର ! ସେଇ ଘରମାନଙ୍କ ଭିତରେ କେଉଁଟି ମୋ ଅଚିହ୍ନା ସୁଖର ଅମାର ? ତା' ଭିତରେ ଥିବ ମୋ ପ୍ରାଣପକ୍ଷୀ; ଚକ୍ଷୁର ପିତୁଳା; କେମିତି ଆସିବ ସିଏ ଚୌକାଠ ଟପି; ହଲି ଦୋହଲି ପବନରେ ଲୀଳାୟିତ ଫୁଟା ମଂଦାରପରି !

ମାତ୍ର ଇଏ କ'ଣ ? ପ୍ରଥମେ ପଡ଼ିଲା ଗୋଟେ ପଶୁଡାକ୍ତରଖାନା ! ତା' ପାଖକୁ କେତୋଟି ବଖରା ଚାଳଛପର ଗୋଟେ ବଂଦ ସ୍କୁଲ ଘର ! ତା' ଆରପଟେ ଗାଁ କାଇନ୍ ହାଉସ୍ । ସେବା ସମବାୟ ସମିତି ଓ ପଞ୍ଚାୟତ ଅଫିସ୍ !

ପଞ୍ଚାୟତ ଘର ପିଣ୍ଡାରେ ଦଳେ ପୁଲିସ୍‌ଙ୍କ ଚାଲିଛି ତାସ୍‌ଖେଳ ! ଲୁହା ଟୋପି ଓ ଲଙ୍ଗ୍‌ଲାଠି; ପାଖରେ ଥୁଆ ହୋଇଛି ବନ୍ଧୁକ କେତୋଟି ! ଶୂନ୍‌ଶାନ୍ ଗାଁ ? ଦୁଇ ପାର୍ଶ୍ୱ ଘର ଧାଡ଼ି ଧାଡ଼ି ! ସବୁ କବାଟ ବନ୍ଦ !

ମୋ ନଜରକୁ ଆସିଛି; ସାଇକେଲରେ ଡାକବାଲା ଫେରୁଚି ! ଲୋକଟି ମଧ୍ୟବୟସ୍କ । ଆଗରେ ଓ ପଛରେ ଡାକମୁଣି ! ଏଇ ଲୋକ ଜୟନ୍ତୀକୁ ମୋ ଚିଠି ଦିଏ ଆଣି !

'ଟିକିଏ ଶୁଣିବେକି ?'

'ପାଦ ତଳେ ଲଗାଇ ଠିଆ ହେଲା ଲୋକଟି !'

'ମୁଁ ଏ ଗାଁକୁ ନୂଆ ଆସିଛି ! ମତେ କହି ପାରିବେକି କବୟିତ୍ରୀ ଜୟନ୍ତୀ ମିଶ୍ରଙ୍କ ଘରଟା କେଉଁଠି ? ଏ ଗାଁରେ ବୋଧେ କିଛି ଅଘଟଣ ଘଟିଛି, ସବୁ ତାଟି କବାଟ ପଡ଼ିଛି ?'

'ଗାଁ କଥା ପଚାରନ୍ତୁନି ଆଜ୍ଞା, ଭାରି ଖରାପ !'

'କ'ଣ ହେଇଚି ?'

ଜଣେ ସରପଞ୍ଚ ପ୍ରାର୍ଥୀ ମର୍ଡ଼ର ହୋଇଛି ! ତା' ସମର୍ଥକ କେତୋଟି ଘର ଉପରେ ବୋମା ଫିଙ୍ଗି ଢାଳି ଭାଙ୍ଗିଭୁଙ୍ଗି ଦେଇଛନ୍ତି । ପରିସ୍ଥିତିକୁ ଆୟତ୍ତ କରିବାକୁ ପୁଲିସ୍‌କୁ ଟିୟରଗ୍ୟାସ୍‌ଠୁ ଗୁଳି ପର୍ଯ୍ୟନ୍ତ ଖର୍ଚ୍ଚ କରିବାକୁ ପଡ଼ିଛି ! ପୁଲିସ୍ ଆରେଷ୍ଟ ଭୟରେ ଗାଁରେ କେହି ପୁରୁଷ ନାହାନ୍ତି । ତେଣୁ ସବୁ ଘର କବାଟ ବନ୍ଦ !.... ଜୟନ୍ତୀ ମିଶ୍ରଙ୍କ ଘର, ଏଇ ସାହି ପାରି ହୋଇଗଲେ ପଡ଼ିବ ଛକ; ସେଇଠୁ ବାଁ ପଟେ ତିନି ଚାରୋଟି ଘର ଛାଡ଼ି ! ଘର ଆଗରେ ଅଛି ଗୋଟେ ଦୋଳବେଦୀ ! ଚିହ୍ନିବାକୁ କିଛି ଅସୁବିଧା ହେବନି । ମୁଁ ଆସୁଛି; ଡେରି ହେଲାଣି !

'ଧନ୍ୟବାଦ !'

ମୁଁ ଚପି ଚାଲିଲି ଘର ପରେ ଘର ଛକ ପର୍ଯ୍ୟନ୍ତ ! ଛାତି ଭିତରେ ଛମ୍ ଛମ୍; ବଢ଼ି ଉଠୁଛି ସ୍ପନ୍ଦନର ବେଗ ! ଆସୁଛି ମିଳନ; କେମିତି ହେବ ? ହାୟ, ସେ କି ଲଗ୍ନ ! ତୁମେ କ'ଣ ମୋର ପ୍ରତୀକ୍ଷାରେ ଥିବ ? କେଉଁ ରଂଗର ଶାଢ଼ୀ ପିନ୍ଧିଥିବ ? କିମିତି ଥିବ ତୁମ ମୁଣ୍ଡ ବାଳ ! ତଳକୁ ଝୁଲିଥିବ ପଣତ ! କାନ୍ଧ ଉପରକୁ ଟେକି ନେବ ?

ଜୀବନ ଏକ ଅଯତ୍ନ ଲିଖିତ ବାର୍ତ୍ତା । ଅନ୍ଧାରରେ ତରତରରେ ଲେଖିଦେଉଛି ହାତଟା ? ଜୀବନ ଦୁର୍ବୋଧ ଗୋଟିଏ ଅଧାଲେଖା କବିତା ! ଠିକ୍ ସେମିତି ହେବନି ତ ତୁମ ଗାଁକୁ ମୋ' ଯାତ୍ରା ? ଅଧା ଓ ଲକ୍ଷ୍ୟଚ୍ୟୁତ ! ଏକ ମାରା ପଇତା ? ତୁମ ଓଠରୁ ଝରୁଥିବ ମୁକୁତା ?....

ଏହା ମଣିଷର ଭାଗ୍ୟ; ମୁଁ ମଣିଷ ପିନ୍ଧିଚି ଦୁର୍ଭାଗ୍ୟର ବସ୍ତ୍ର ! ସବୁ ଆର୍ଟିଷ୍ଟଙ୍କ ଜନ୍ମ କାଳ ଅତ୍ୟନ୍ତ ଖରାପ ଓ ମୋ' ଜନ୍ମ ବେଳ ଥିଲା ସବୁଠୁ ଖରାପ ! କୃଷ୍ଣ କେତେବେଳେ ଜନ୍ମ ହେଲେ ତୁମେ ତ ଜାଣିଚ; ଆକାଶରେ ଚୌମେଘ, ବନ୍ଦୀଗୃହ, ଜନନୀ କରପଦରେ ଶୃଂଖଳ, ବୋହୁଛି

ଅଣଚାଶ ପବନ, ସଶସ୍ତ୍ର ରକ୍ଷୀ ଓ ପ୍ରହରୀଙ୍କ ଭିଡ଼; ସମୟ ନେଇଥିଲା ଜନ୍ମ ।

ଦୁଃଖ କେତେବେଳେ ଆସେ ଜୟନ୍ତୀ ? ଯେତେବେଳେ ଘଟେ ଇପ୍‌ସିତ ବସ୍ତୁର ଅପ୍ରାପ୍ତି, ପ୍ରିୟଜନଠାରୁ ବିଚ୍ଛେଦ, ଅପ୍ରିୟ ଜନ ସହିତ ମିଳନ, ଆସେ ରଗ୍‌ଣ ଓ ବୃଦ୍ଧାବସ୍ଥା ଏବଂ ପହଞ୍ଚେ ମୃତ୍ୟୁ ! ଇନ୍ଦ୍ରିୟ ଜନିତ ସୁଖର ବସ୍ତୁ ଅପସରି ଗଲେ ଆସେ ଦୁଃଖ ।

ଦୁର୍ଭାଗ୍ୟ ଆସେ କେହି କା'କୁ ଭଲପାଇଲେ ଏବଂ ଭଲପାଇବା ଆସେ ନାହିଁ ଭଲବେଳ ଯେତେବେଳ ପର୍ଯ୍ୟନ୍ତ ନ ପହଂଚିଛି !

ପ୍ରେମ ? ହଁ, ମୁଁ କରେ; ତୁମକୁ ?

ତୁମେ .... !

ତୁମେ ଗୋଟିଏ ଉପନ୍ୟାସର ପ୍ଲଟ୍ । ପ୍ଲଟ୍ ଦରକାର ଥାଏ ପାଠକକୁ ଭାବପ୍ରବଣ କରିବାକୁ ! ପ୍ରଣୟ ଓ ବିଚ୍ଛେଦ ଦୁଇଟିଯାକ ଭଲ ଭାବାବେଗ ! ତୃତୀୟ ଆବେଗଟି ଶାନ୍ତି ! ଆବେଗମାନ ମାନବ ଜୀବନରେ ଲୀଳା ରଚନ୍ତି !

ପ୍ରେମ ? ହଁ, ମୁଁ କରେ ମୋ ଆବେଗକୁ ! କଳାସୃଷ୍ଟି ପାଇଁ ଆବେଗ ଅପେକ୍ଷା ଆବଶ୍ୟକ ଟେକ୍‌ନିକ୍ ! ପ୍ଲଟସବୁ ପୁରୁଣା ଜାମା; ଶୈଳୀଟି ନୂଆ ! ସ୍ନାୟୁରେ ଚଳାଏ ତା' ପାଖୁଡ଼ାର ଟିପ ! ଗୋଟିଏ କଂଢେଇ ଭାଙ୍ଗିଗଲେ; ମୃଣ୍ମୟର ଭଙ୍ଗା ଠନ୍‌ଠନ୍ ଶବ୍ଦ ଆଁଦ୍ରେଜିଦ୍‌କୁ କରୁଥିଲା ଉତ୍ତେଜିତ ! ମତେ ଉତ୍ତେଜିତ କରୁଛି ମୋ ଆବେଗ !

ଏ ଆବେଗକୁ ତୁମେ ନେବ ?

ମୋପରି ପାଉଣ୍ଡ୍ ବି ଥିଲେ ଆବେଗ ପୀଡ଼ିତ ! ଭଲପାଇବା ରୋଗାକ୍ରାନ୍ତ ! ଇଏଟସ୍‌ଙ୍କ ଅନ୍ତରଙ୍ଗ ବାଂଧବୀ ଡ଼ରୋଥି ସେକ୍ସପୀୟର ସହିତ ସିଏ କଟାଉଥିଲେ ଗ୍ରୀଷ୍ମ । ଉଣେଇଶ ବର୍ଷ ବୟସ ବେଳେ ପିଆନୋବାଦିକା ଚୌତ୍ରିଶବର୍ଷ ବୟସ୍କା କାଥାରିନ୍ ରଥ୍ ହେମ୍ୟାନ୍ ନିଜ ପାପୁଲିର ପାଖୁଡ଼ାରେ ତାଙ୍କଠୁ ତୋଳି ନେଉଥିଲା ଦୁଃଖର କଂଟକ !

ଜଣେ ଜଣକୁ ଏତେ ନିଃସ୍ୱାର୍ଥପର ଭାବେ କାହିଁକି ଦେଇଦେବ ? କାହିଁକି ?

ମନୁଷ୍ୟକୁ ବଂଚାଇ ରଖେ ଆନଂଦ । ସେଇ ଆନନ୍ଦ ହେତୁ ତା' ଭିତରେ ଜମାଟ ବାନ୍ଧେ

ସୌନ୍ଦର୍ଯ୍ୟବୋଧ ! ସେଇ ଜମାଟକୁ ଯିଏ ତରଳାଇ ଦିଏ ତା' ପାଖରେ ବିକ୍ରୀ ହୋଇଯାଏ ଆବେଗ !

କାହିଁକି ଦର୍ପଣରେ ମୁହଁ ଦେଖିବାକୁ ଭଲ ଲାଗେ ଏବଂ ନିଜ ମୁହଁ ସୁବୁଠୁ ସୁନ୍ଦର ବୋଲି ନିଜକୁ ଲାଗେ ? ଦର୍ପଣକୁ ଅନେଇଲେ ନିଜ ଭିତରେ ଜମାଟ ବନ୍ଧା ସୌନ୍ଦର୍ଯ୍ୟ ତରଳେ !

'ଏଣ୍ଡ ଦି ବ୍ରିଜ୍ ଇଜ୍ ଲଭ୍' ଅଲ୍‌ମ ମହ୍ଲେର ୱେର୍‌ଫେଲଙ୍କ ଆତ୍ମକଥା 'ପ୍ରକୃତରେ ମୁଁ ଜଣେ ପୁରୁଷକୁ ଭଲ ପାଏ କାହିଁକି; ମୋ ଭିତର ଶୂନ୍ୟତାକୁ ତାଙ୍କ ଦ୍ୱାରା ହେଉଥିବା ପୂରଣ ସଂପାଦନା ପାଇଁ ! ଲେଖିଥିଲେ ଲେଖିକା ତାଙ୍କ ସ୍ୱାମୀ ଗୁସ୍ତାଭ ମହ୍ଲେରକୁ- ଏବେଠୁ ତୁମର ଗୋଟିଏ ପ୍ରଫେସନ୍ଃ ମତେ ଖୁସି କରିବା !'

ପୁରୁଷ ମାତ୍ରକେ ଏଇ ଗୋଟିଏ ଧଂଦା; କ୍ଷୁଦ୍ର କାୟା ଅପ୍ରଶସ୍ତ ସ୍କନ୍ଧ, ସବୁବେଳେ ନିଜକୁ ସଜାଉଥିବା (ଯେଣୁ ସିଏ କୁତ୍ସିତା !) ସାନ ନାରୀଟିକୁ ହରଷ ରଖିବା ପାଇଁ ସିଏ ଖର୍ଚ୍ଚ କରୁଚି ତା' ସମଗ୍ର ଜୀବନର ଶ୍ରମ ! ତା' ମୃତ୍ୟୁପରେ ରାଜକୋଷ ଶୂନ୍ୟ କରି ଗଢ଼ିଦେଉଛି ତାଜମହଲ ?

ଜୟନ୍ତୀ, ମୁଁ ତୁମ ପ୍ରୀତିରଙ୍ଗା ମୁଗ୍ଧ ପୃଥିବୀ; ସୃଷ୍ଟିର ପ୍ରାରଂଭରୁ ଶେଷ ଯାଏ ଦୁଇବାହୁ ମଝିରେ ତୁମକୁ ମୁଁ ସାଇତି ରଖିବି ! ତୁମ୍ଭେ ମୋର ହଜିବାର ଉପବନ ଓ ହାରିବାର ଇଡ଼େନ୍ ! ମୋ ଦୃଷ୍ଟିର ତରୁରେ ଭର୍ତ୍ତି ନିଷେଧ ବୃକ୍ଷର ଫଳ; ସନ୍ଧ୍ୟା ଓ ସକାଳ ! ମତେ ଡ଼ାକେ କିଏ ? କା' ହାତର ପରଶ ଚୁମ୍ବନ; କା' ଦେହ ବାସନାର ଏ ଆକୁଳ ଆହ୍ୱାନ; ମତେ କରେ କିଲିବିଲି; କା' ହାତର ଆଙ୍ଗୁଠି ? ସେଇଥି ପାଇଁ ତୁମ ଗାଁ, ଉପତ୍ୟକାକୁ ପକ୍ଷୀଟିଏ ପରି ମୁଁ ଉଡ଼ିଆସୁଛି ! ତୁମ ଡ଼ୋଳାର କଳା ନିର୍ଜନ ଟାପୁରେ ମୋ ପାଇଁ ଅରାଏ ସଫା ବିଶ୍ୱାସ କ୍ଷୁଧାତୁର ଜହ୍ନଟିଏ ହୋଇ ଅଛିତ ? ତା' ନ ହେଲେ ଦୁଃଖର ଫୁଲରେ ମୁଁ କରିବି କା' ପୂଜା ! ନିଜ ବନ୍ଦ ଝରକାର ?

ଅରଣ୍ୟରେ ନିଆଁ ଲାଗିଚି !

କାମନା ମରିଗଲେ ? ଆଉ କ'ଣ ଝାମୁ ଚାଲିବ କାଳେସୀ ? ଥିଓଡ଼ୋର ଇଶାକ୍ ରବିନ୍‌ଙ୍କ ବହି ମୋ ଜୀବନ "ସୁଇଟ୍‌ଡ଼ାଡ଼ି ?" ସପ୍ତାହକୁ ନିର୍ଦ୍ଦିଷ୍ଟ ଏକ ପିଙ୍ଗଳାକୁ ଭେଟିବାକୁ ନିଜ ସହରରୁ ଅନ୍ୟଏକ ସହରକୁ ଉଡ଼ିଆସୁଛି ଚରିତ୍ର ସୁଦୀର୍ଘ ଚାରିହଜାର ମାଇଲ ! ଏକ ନିର୍ଦ୍ଦିଷ୍ଟ ଆକୃତିର ହଳେ ନିଷିଦ୍ଧ ଫଳ ସେଇ ପିଙ୍ଗଳା ବକ୍ଷର ତାକୁ ଆକର୍ଷିନିଏ; କରିଥାଏ ପାଗଳ ! ତୃମେ, ତୋଷେ ଓ ତୃପ୍ତ ହୋଇ ଫେରେ ଲେଉଟିଲେ ସକାଳ !

ଥରୁଟିଏ ବି ଲୋକଟି ସହବାସ କରେନି; କେବଳ ମୁଖର ଲଫାପାରେ ମାଂସର ଚିଠି ହଳକୁ ବାଂରବାର ଓଲଟପାଲଟ କରି ପଢ଼େ ଓ ତରଳାଏ ତା' ଅନନ୍ତ ପିପାସା ! ଝରକା ଖୋଲେ ଏବଂ ବନ୍ଦକରେ ଜମାଟବନ୍ଧା ଜ୍ୟୋସ୍ନା ଟଗରକଢ଼ ହୋଇ ପିଚ୍‌ପିଚ୍ କ୍ଷରିବା ପର୍ଯ୍ୟନ୍ତ ! ତମାମ ରାତି !

ଅଫିମପରି କି ତୀବ୍ର ନିଶା ଉଦ୍ଦୀପନାର ଶିକାର ହୋଇଯାଏ ବାବଦୁକତା ? ଗଚ୍ଛିତ ଶବ୍ଦ ଛାଡ଼ି ଚିତ୍ରକଳ୍ପର ମୁଁ ନେଉଛି ଆଶ୍ରୟ ? ଜୟନ୍ତୀ, ତୁମେ ମୋ ବାଇବେଲ୍ !

ଈଶ୍ୱର ତତ୍ତ୍ୱର ଉପପାଦ୍ୟଟିଏ ମୁଁ ପାଇଛି; ମୋପରି ମୁକ୍ତ ମଣିଷର ଈଶ୍ୱର ଜଣେ ଦରକାର ? ତୁମେ ତ ମୋତେ ଦେଖା ଯାଉଛ ଯେମିତି 'ମଦର୍ ଟାଇମ୍ !' ଜନନୀ ସମୟ ! ଅସଂଖ୍ୟ ପରିପୂରକରେ ଭର୍ତ୍ତି ନଗ୍ନା ମହାକାଳୀ; ତା'ରୁଚିର ସ୍ତନଯୁଗଳର ତୁଙ୍ଗିମାକୁ ଆଚ୍ଛାଦିଛି ଅପଠିତ ଖପୁରୀ ଓ ଛିଣ୍ଡା ହାତର ପଣତକାନି ! ମୌଳିକ ପାପପୁଷ୍ପ ହୁଏ ରିନିୟୁ ?

ମୁସ୍କିଲ ସ୍ତୋତ୍ର ଓ କୁପିତ ଅବ୍ୟବହିତ ! ମୁଁ ସମାନ ମନ୍ତ୍ରମୁଗ୍ଧ ଏକ ଦୀର୍ଘ ବନାନ ! ତୁମ ଗାଁ ଉପତ୍ୟକାରେ ମୋ ପହଂଚିବା ଏକ ପୁନର୍ନବୀକରଣ ! ନୀଳିମାଭର୍ତ୍ତି ଏକ ବିଂରଳ ବ୍ୟତିକ୍ରମ ! ଯେମିତି ତୁମ ମନ !!

ଜୟନ୍ତୀ, ଅନ୍ତର୍ବସ୍ତ୍ରରେ ଲୁଚାଇଦେବ ପରିବର୍ତ୍ତନର ଦିନ ? ତା'ରି ନାଁ ପାପ ! ତୁମେ ତ ଚେନାଏ ଅନ୍ତରଙ୍ଗ ଅତଳ ଆଶ୍ରୟ ମୋର ! ଉତ୍ସର୍ଗୀକୃତ ମୋ' ବନ୍ଦୀ ପରିଚୟ ! ରାସ୍ତାର ମୋଡ଼ଣିରେ ଅନାସ୍ୱାଦିତ ରହିଯିବ ବିକ୍ଷିପ୍ତ ପ୍ରତୀକ୍ଷାର ଅଠାଳିଆ ନୀରବତା ! କାହିଁକିରେ ପ୍ରିୟତମା ମୋର ! ଅନ୍ତର୍ଗତ ପ୍ରଚ୍ଛନ୍ନ ସାର୍ବଭୌମ ସ୍ୱପ୍ନ ମୋ' ସୁବାସିତ; ମାଗେ ଅବବୋଧ ସ୍ୱୀକୃତ ଚିନ୍ମୟ ସାନ୍ନିଧ ! ରଶ୍ମି ନଦୀ, ଯାବତୀୟ ବେଷ୍ଟନି ଟପି ତୁମେ ବୋହିବନି ମନୋମୟ ପକ୍ଷୀ ? ବାହୁର ଚାଦରରେ ତୁମକୁ ମୁଁ ଘୋରେଇ ଦେବି !.ଅମୁହାଁ ଶୀତର ପେଁକାଳି ବର୍ଣ୍ଣମାଳା ଭିତରେ ତୁମର ବର୍ତ୍ତମାନକୁ ଛୁଇଁପାରିବନି !

'ସଂସାରରେ ଯଦି ନାରୀ ନଥାନ୍ତେ ପୁରୁଷମାନେ ଈଶ୍ୱର ସହିତ କଥାବାର୍ତ୍ତା ହେଉଥାନ୍ତେ ।' 'ଯଷ୍ଟିନ୍'ରେ ଡ଼ି ସେଡ଼ଙ୍କ ମନ୍ତବ୍ୟ ! ନିତ୍‌ସେ କହୁଥିଲେ ନାରୀ ଈଶ୍ୱରଙ୍କ ଦ୍ୱିତୀୟ ତୃଟି !

ପୁଅକୁ ଦୁର୍ଗ ଭିତରେ ଶୈଶବରୁ ନାରୀଠୁ ଦୂରେଇରଖି ପିତା ତା' ବଢ଼େଇ ଆଣିଛି ! ତାକୁ କୋଡ଼ିଏ ବର୍ଷ । ତା' ଜନ୍ମଦିନରେ ପିତା ତାକୁ ନେଉଛନ୍ତି ଦୁର୍ଗ ବାହାରକୁ । ସିଏ ଦେଖୁଛି

ବିପଣୀମାଳା ପୂର୍ଣ୍ଣ ଗୋଟିଏ ହାଟ ।

ଚାଲିଯାଉଥିବା ଜଣେ ସୁଶ୍ରୀ ଯୁବତୀକୁ ଦେଖି ସିଏ ହେଉଛି ଘୋର ବିସ୍ମିତ ! ଇଏ ପୁଣି କି ଚିଜ ?

'ବାପା, ସେଇଟା, କ'ଣ ?'

'ଗୋଟାଏ ପକ୍ଷୀ !'

'ତମେ କହିଚ ମତେ ଉପହାର ଦେବ ମୋ ଜନ୍ମଦିନରେ କହିଚ ନା'; ମୁଁ ଯାହା ମାଗିବି ମତେ ଦେବ କିଣି ?'

ହଁ, ପୁତ୍ର ! ଦେବି !'

'ମତେ ସେ ପକ୍ଷୀଟା ଦିଅ ବାପା !'

'ଛିଃ, ଏ ହାଟରେ ଅନେକ ଜିନିଷ ଭର୍ତ୍ତି; ଅଥଚ ତୁ ମାଗୁଛୁ ଗୋଟାଏ ପକ୍ଷୀ ? ଆଉ କ'ଣ ଭଲ ଜିନିଷ ମାଗ ପୁ ଅ !'

'ନୋ, ନୋ ପାପା; ଆଇ ୱାଣ୍ଟ୍ ଦାଟ ବାର୍ଡ୍ !'

ମର୍ତ୍ତ୍ୟଙ୍କ ଉପନ୍ୟାସ ! ପାଇବା ଲୋକର ଠିକଣା ନାହିଁ; ଲଫାପାରେ ଭର୍ତ୍ତିଚିଠି ! ଅଚିହ୍ନା; ଆଖିରେ କର୍ପୂର ଜଳୁଛି ! ଅଜଣା ଋତୁର ପାହାଚ ମନ ଓ ମସ୍ତିଷ୍କସାରା ଭର୍ତ୍ତି ! ଆବେଗର ଶୀତଳ ଦଂଶନ ଛାଡିତଳେ ଦାଉଁଦାଉଁ ସ୍ମୃତିକୁ କଚାଡୁଛି ! ନୀରବ ଯନ୍ତ୍ରଣାରେ ଛଟପଟ ହେଉଛନ୍ତି ଇପ୍ସିତ ସଂଭାବନାର ସ୍ନାୟୁ ! ଲିଭି ଗଲାଣି ଅହମ୍ !

କେଉଁଘର ? ଏଇଟା ? ସାମ୍ନାରେ ଦୋଳବେଦୀ ଏଇ ! ଏଇଠି ବିଶ୍ୱାନୁଭବ ମୋ' ବୋଧଭୂମି ? ଏଇଠି ହେବ ମୋ' ନିର୍ବାଣପ୍ରାପ୍ତି ? ସ୍ୱୟଂ ଅତୀନ୍ଦ୍ରୀୟ ନୈର୍ବ୍ୟକ୍ତିକ ହେବେ ପ୍ରଶାନ୍ତିମୟ; କ୍ରିୟା ରହିତ ! ଏଇ ଘରେ ? ଗୋଟିଗୋଟି ହୋଇ ତିନୋଟି ପାହାଚ ଦାଣ୍ଡରୁ ବାରଣ୍ଡା ପର୍ଯ୍ୟନ୍ତ ! ତମଃ, ରଜ ଓ ସତ୍ୱ ! ତା' ପରେ ଖୋଲା ହାଟ; ହାଟ ଆରପାରେ ରତ୍ନବେଦୀ ରତ୍ନବେଦୀରେ ବିଜେ ମହାଦେବୀ !

ତୁମେ ?... ତୁମେ, ମୋଉପାସନାର ପରିପୂର୍ଣ୍ଣ ଅତିଚେତନା ! ସାଂକେତିକ; ପ୍ରକଟିତ

ସର୍ବୋଚ୍ଚସତ୍ତାଗତ ସତ୍ୟ ! ମୋ ସ୍ୱପ୍ନ ଓ ସୁଷମା ! କବାଟରେ ମୁଁ ହାତ ମାରିଲେ ତୁମେ ଫିଟାଇଦେବ ତୁମ ଅନୁଭୂତି ? ନିକ୍ୱଣି ଉଠିବ ମୋ ଉତ୍ତେଜନାର ଆର୍କିଟାଇପ୍ ! ବାରଣ୍ଡାର ଦୁଇପଟେ ବସିଛି ଦୁଇଟି କଳସ ! ପଇଡ଼ରୁ ଖସି ଗଲାଣି ନାସି ! କଳସ ତଳ ଆର୍ଦ୍ର ସିକତାରୁ ରୋପିତ ଅଙ୍କୁର ହେଲାଣି ହାତେ ଲେଖା ଗଛ ! ଚୌକାଠ ଦୁଇପାର୍ଶ୍ୱ କାନ୍ଥରେ ଅଙ୍କାଯାଇଛି ଦୁଇଟି ସବୁଜ ରମ୍ଭାପାଦପ ! ଦୁଇପଟେ ଦୁଇଜଣ ଉଡ଼ନ୍ତା ପରୀ ଫୁଙ୍କୁଛନ୍ତି ଶଂଖ ! ତା' ପାଖକୁ ଶୁଭ ମହୁରୀ ! ମାଙ୍ଗଳିକ ଚିହ୍ନ ! ... କାହାର ?

ଖୁଣ୍ଟପରି ଥମ୍‌କିନା ଥିର ହୋଇଗଲା ପାଦ ! ଆଗକୁ ଓ ପଛକୁ ଦୃଷ୍ଟିର ପକ୍ଷୀ ଡ଼େଣା ପିଟି ଲେଉଟି ପାଉଟି ଅନେଇଲା !

ନା' କେହି ନାହାନ୍ତି ! ସବୁ ଘର ଭିତରୁ ବନ୍ଦ । ଜୟନ୍ତୀ ଘରର ପାହାଚ ତିନୋଟି ରବୀନ୍ଦ୍ରନାଥଙ୍କ 'ରିଭରଷ୍ଟେୟାର' ଗଳ୍ପପରି ମତେ ଅନାଇଛନ୍ତି ! ଏଥର ସେମାନଙ୍କ ଉପରେ ମୁଁ ପାଦ ଦେବି ? ଦୃଷ୍ଟି ପଡ଼ିଲା ଡ଼ାହାଣ ପଟ କାନ୍ଥରେ କଟାଯାଇଛି ଗୋଟେ ପଦ୍ମ ମଣ୍ଡଳ । ନାଲି, ନେଳି, ହଳଦୀ ରଙ୍ଗରେ ଚିତା ଗୋଲ ଗୋଲ । ତା' ଭିତରେ ବସିଛି ଛୋଟଛୋଟ ଅକ୍ଷରର ମୁକ୍ତା ! କାହା ସହିତ ଶୁଭ ସଂପର୍କ କା' !!

ନାକ ଉପରକୁ ଉଡ଼େଇଲି; ଅଳ୍ପ ଟେକିଦେଲି ଚଷମାଟା ! ଉହୁଙ୍କି ଅକ୍ଷରଗୁଡ଼ିକୁ ଚିହ୍ନିବାକୁ କଲି ଚେଷ୍ଟା ! ଯେମିତି ନୂଆନୂଆ ଇଏ ମୋର ଅକ୍ଷର ଶିକ୍ଷା ।

'ଆୟୁଷ୍ମତୀ ଜୟନ୍ତୀ ସହିତ ଆୟୁଷ୍ମାନ.... ।' ନୀଡ଼ଶୂନ୍ୟ !.... ବାସ୍, ବାସ୍ ! ଆଉ ଆଗକୁ ଯିବା କ'ଣ ଆବଶ୍ୟକ ! ଫେରନ୍ତା ଟ୍ରେନ୍ ପାଇଁ ଏଠି ମିଳିବ ଟିକେଟ ? ଗାନ୍ଧୀ ତ ତା' ସାରାଜୀବନ ବିଫଳ !

ମୁଁ ଦେବଦାସ ପାର୍ବତୀର ଗାଁକୁ ଆସିଛି ! ଏଠୁ ମୁଁ ଯିବି କୁଆଡ଼ିକି ?

ମୋ ଭିତରେ ଗୁଣୁଗୁଣୁ ହୋଇ କିଏ ଜଣେ ଗାଉଛି ଅପରିଚିତ ଝଡ଼ ପରବର୍ତ୍ତି ଉଦାସ ସକାଳର ଶାଶ୍ୱତ ଗୀତ ! 'ସ ଯଃ ଅନ୍ୟମ୍ ଆତ୍ମନଃ ପ୍ରିୟଂ ବ୍ରୁବାଣ ବ୍ରୟାତ୍ ତସ୍ୟ ପ୍ରିୟସ୍ୟ ରୋତସ୍ୟତୀତି; ଅର୍ଥାତ୍ ନିଜ ଆତ୍ମା ବ୍ୟତୀତ ଆଉ ଯାହାକୁ ଭଲ ପାଇବ ତା'ର ଦିନେ ମୃତ୍ୟୁ ହେବ; ସିଏ ତୁମଠୁ ଦୂରେଇ ଯିବ ।'

ଯାଉ !

ଯିବାକୁ ଦିଆଯାଉ ସମୟକୁ ! ସମୟ ତ ଜୟନ୍ତୀର ମାନବୀ ରୂପ !

ମାଂସର ଅଙ୍ଗ !

କିଏ କାନ୍ଦୁଛି !

ନିର୍ବେଦ ?

'ଦୁର୍ଗ' ଦେଖିଚ ଜୟନ୍ତୀ ? ଭଗ୍ନ ବାରବାଟୀ ନୁହେଁ; ଯେଉଁଠି ଯୋଶେଫ କେ ଓ ଲ୍ୟାଣ୍ଡସର୍ଭେୟର୍ କେ. ଦୁଇ ଚରିତ୍ର ପ୍ରଚ୍ଛଦର ଦୁଇ ଫର୍ଦ୍ଦ ! ଭାଇ କାଫ୍‌କାଙ୍କ ଉପନ୍ୟାସ ! ଯିଏ ନିତସେଙ୍କ ଓଠରୁ ଛଡ଼ାଇ ନେଇ କୁହନ୍ତି; ଆମେ ବଂଚିଚୁ ମରିବା ପାଇଁକି ! ଜୀବନ ଅର୍ଥାତ୍ ମନ୍ଥର ମୃତ୍ୟୁ ! ମୃତ୍ୟୁ ଆଡ଼କୁ ଯାତ୍ରା !

ତୁମେ 'ଦୁର୍ଗ'ର ରୂପସୀ ପ୍ରସୂନ ଯୁବତୀ ଅମାଲିଆ ! ତୁମ ଆଖିରେ ନାହିଁ ଆଶାର ଇଂଦ୍ରଧନୁ; ନାହିଁ ପାଇବାର ଶ୍ୟାମଳୀ ମେଘ; ଦୃଷିତ ସମୁଦ୍ର ! ମୁଁ ତୁମ ଠିକ୍ ବିପରୀତ ଲ୍ୟାଣ୍ଡ ସର୍ଭେୟର ଚରିତ୍ର ! ତୁମ ଗାଁ'କୁ କରିଚି ମୋ ଯାତ୍ରାର ସର୍ଭେ !

'କେତେ ତୁମକୁ ମୁଁ ଚାହୁଁଚି ! କହୁଚି କେ' !

'କେତେ ପରିତ୍ୟକ୍ତ ମୁଁ ନିଜକୁ ଅନୁଭବ କରୁଚି; ତୁମକୁ ଜାଣିବାଠୁ, ଯେତେବେଳେ ତୁମେ ମୋ ପାଖରେ ନ ଥାଅ ! 'କେ'କୁ କହିଚି ଫ୍ରିଡ଼ା !

କି ଆକର୍ଷଣ; ଏତେ ଉତ୍କଣ୍ଠା ! ଭର୍ତ୍ତିଥାଏ ହାୟ କେତେ କେତେ ଭଲ ପାଇବାର ଗୋପନୀୟ ଲଫାପା ! ବ୍ଲାଉଜ୍ ଭିତରେ ମନିପର୍ସପରି ତୁମେ ବି ଲୁଚେଇ ରଖିଥିଲ ତୁମ ମନ ଭିତରେ ସେଇ ଲଫାପା ! ନୁହେଁ ? ମୋ ଭିତରେ ନ ଥିଲା ଅଲଗା ତୃଷା ! ମୋ ଭିତରେ ମଧ୍ୟ ଜମାଟ ବାନ୍ଧିଚି ସେଇ ଏକା ଉତ୍କଣ୍ଠା-ମିଳନ !

ଦିବାସ୍ୱପ୍ନ ଝୁଲଣ ରଚିଛି ମାୟାର; ତାରି ଆକୃତିର ନାଁ ଆଶା ! ଆହା, କି ସୁନ୍ଦର ! ମତେ ଦୌଡ଼ାଇ ଆଣିଛି ମାୟାମୃଗ ସର୍‌ରିଆଲିଜିମ୍‌ରୁ ଅସ୍ତିତ୍ୱବାଦ ପର୍ଯ୍ୟନ୍ତ !

ଶେଷକୁ ପ୍ରେମିକା ଫ୍ରିଡ଼ା ଗହଣ କରିଛି ଜଣେ ଆସିଷ୍ଟାଣ୍ଟର ପତ୍ନୀତ୍ୱ ! କେ'ର ଜଣେ ଆସିଷ୍ଟାଣ୍ଟକୁ ବାହା ହୋଇଛି ! କାରଣ ? ଦୈନନ୍ଦିନ ଜୀବନର ଅସହ୍ୟ ଯାତନା ସିଏ ଭାଗ କରିବାକୁ ଚାହିଁଛି ! ସିଏ ଅପେକ୍ଷାକୃତ ପସନ୍ଦ କଲା ତା' ଦଶାର ଅସ୍ତଗାମୀ ଜହ୍ନକୁ ସୁଧାରି ନେବାକୁ ! ଝିଅ, ଘିଅ !

ଦରକାର ତାକୁ ଖର୍ଚ୍ଚ କରିବା ଦାୟିତ୍ୱ କାହାରି ଗ୍ରହଣ ! ନ ହେଲେ ରହଣିଆ ବାସିବ ?

ପ୍ରେମିକ କେ'ର ବାସନା ଫ୍ରିଡ଼ା ପାଇଁ ପୃଥିବୀ ନୁହେଁ; ତା'ପାଇଁ ପୃଥିବୀ ତା'ନିଜ ଜୀବନ ! ସେଇଥି ପାଇଁ ଜୟନ୍ତୀ ଆଉ କା' କୁ ସମର୍ପିଦେଲା ତା' ଚଲାପଥର ସାହଚାର୍ଯ୍ୟ ! ମାନସକୁ ଅନେଇବାକୁ ତା' ପାଖରେ ଆଉ ସମୟ ନଥିଲା ।

ଜୟନ୍ତୀ, ଏ ପୃଥିବୀର ମୂଳ ଉପାଦାନ 'ମାଟି' । ଅର୍ଥାତ୍ କେହି ଆମେ ପାଇବାନି କାହରିକୁ ଏଠି ! ତେଣୁ ମୁଁ ଆଜି ଫେରୁଚି ତୁମ ଗାଁରୁ ଏକାକି !

କ'ଣ ଏ ଜନମେ ଆସିଥିଲେ ଆମେ ପରସ୍ପର ଡ଼କାଡ଼କି ହୋଇ ଫେରିବାକୁ ଖାଲି ଏକାକି ଏକାକି !! ସେଇଥି ପାଇଁ ଏତେ ପରିଚୟ, ଏତେ ସ୍ନେହ, ଏତେ ଚିଠି ତୃଷ୍ଣାର ଛାମାଛୋଡ଼ ସ୍ୱପ୍ନର ଜମାଟ ବାନ୍ଧିଛି !!

ମୋ ଭିତରେ ଅହରହ ଦୁଇଟି ପ୍ରଶ୍ନ ଘଣ୍ଟାର କଣ୍ଟାପରି ଘୂରୁଛି ! ଯଦି ମୋ ତୁମସହ ମିଳନ ହୋଇଥା'ନ୍ତା, ତେବେ ଅଶୁଦ୍ଧି ହୋଇଯାଇଥାନ୍ତା ବେଦର କେଉଁ ସୂକ୍ତଟି ?

ମୋର ଶେଷ ପ୍ରଶ୍ନ-ଯଦି ତୁମ ସହ ମୋ ମିଳନ ହୋଇଥାନ୍ତା ମୋତେ କ'ଣ ମିଳି ଯାଇଥାନ୍ତା ସ୍ୱଦେହରେ ସ୍ୱର୍ଗ ଏବଂ ଏବେ ମୃତ୍ୟୁପରେ ନରକ ମିଳିବ ? ମୋ ପ୍ରେମ ମିଛ ପ୍ରମାଣିତ ହେବ !!





ନକୁଳ ଚନ୍ଦ୍ର ସାହୁ କଥାବିହୀନ କଥାକାର ଭାବେ ବିଭିନ୍ନ ପତ୍ରପତ୍ରିକାରେ ପ୍ରାୟତଃ ପରିଚିତ । ଶୈଳୀ ଓ ଅଧ୍ୟୟନ ତାଙ୍କ ଗଦ୍ୟର ସ୍ୱାତନ୍ତ୍ର୍ୟ । ୨୦୦୪ ପୂଜାରେ 'ଜାଁ କ୍ରିଷ୍ଟୋଁଫର ଏପିକ୍' ପ୍ରକାଶ ପାଇଛି ତାଙ୍କ ପ୍ରୋଜ୍-ପୋଏମ୍ ଉପନ୍ୟାସ । ସହସ୍ରାବ୍ଦୀ ୨୦୦୦ରେ ପ୍ରକାଶିତ 'ସମୟ ଭୁଲ୍ କରୁଛି ବ୍ୟାକରଣ' ଏବଂ 'ମନର ମଣିଷ' ଶୀର୍ଷକ ଦୁଇଟି ଅନବଦ୍ୟ ଏକ୍ସପେରିମେଣ୍ଟାଲ୍ କୃତିତ୍ୱ । 'ନିର୍ବଂଶ ରାବଣର ନୃତତ୍ତ୍ୱ' (୧୯୮୨) ତାଙ୍କ ପ୍ରଥମ ଉପନ୍ୟାସ । ୯୫ରେ 'ସମାବେଶ' ପ୍ରକାଶ କରିଥିଲେ ତାଙ୍କ ଉପନ୍ୟାସ 'ସିଂହଦ୍ୱାରୁ ସ୍ୱର୍ଗଦ୍ୱାର' । ୯୬ ପୂଜାରେ ପ୍ରକାଶ ପାଇଥିଲା ତାଙ୍କ ରଙ୍ଗୀନ୍ ଗଦ୍ୟର ଅନନ୍ୟ ପ୍ରକାଶ, 'ମାଧ୍ୟାକର୍ଷଣ, ଲବଙ୍ଗ ଫୁଲ ଓ ତ୍ରିଭୁଜ' । ୯୭ ବର୍ଷ 'ଅନୁରୂପା' ପାଠକଙ୍କ ପାଇଁ ତାଙ୍କ ପୂଜା ଅର୍ଘ୍ୟ ଥିଲା 'ମିଳନ' । ଏହି ମିଳନ ପ୍ଲଟ୍‌ରେ ଲାଗିଛି ଜଏସ୍‌ଙ୍କ 'ୟୁଲିସିସ୍'ର ରଙ୍ଗ । 'ୟୁଲିସିସ୍' ବ୍ଲୁମ୍‌ର ଭ୍ରମଣ କାହାଣୀ, ମାନସର ଭ୍ରମଣ କାହାଣୀ 'ମିଳନ' । ନୂତନତ୍ୱରେ ପ୍ଲଟ୍ ସଜା ଦ୍ୱାରଟିଏ ଖୋଲିଛି । ଓଡ଼ିଆ ଉପନ୍ୟାସ ସେଇ ଦ୍ୱାରଦେଇ ଫ୍ୟାସନ୍ ଓ ପ୍ରଯୁକ୍ତିର ଏକବିଂଶ ଶତାବ୍ଦୀରେ ପ୍ରବେଶ କରିଛି । 'ମିଳନ' ଗୋଟିଏ ଜୀବନ୍ତ ସ୍ୱପ୍ନ, ଯେତେ ଦେଖି [illegible] !